# ଶିକ୍ଷକସହାୟକ ପ୍ରବନ୍ଧ

# Pedagogical Essays



Satrughna Nath B.A.(Hons.), D.Ed.

# ଶିକ୍ଷକସହାୟକପ୍ରବନ୍ଧ

# Pedagogical Essays




ଲେଖକ

ଏମ୍. ଏ. (ଲଣ୍ଡନ)

ଶ୍ରୀ ଶତ୍ରୁଘ୍ନ ନାଥ, ~~ବି. ଏ. (ଅନର୍ସ), ଡି. ଇଡ଼୍.~~



~~ପ୍ରଥମ ସଂସ୍କରଣ~~ ପରିବର୍ତ୍ତିତ ଓ ସଂଶୋଧିତ ସଂସ୍କରଣ ।

ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର, କଟକ ପବ୍ଲିଶିଙ୍ଗ୍ ହାଉସ୍

ନୟାସଡ଼କ, ପୋଃ ଅଃ ଚାନ୍ଦନୀଚୌକ

କଟକ

~~ପ୍ରକାଶ~~ ୧୯୫୭

ମୂଲ୍ୟ ୮ ୦ ୳ ଆଠ ଅଣା ମାତ୍ର

# ଶିକ୍ଷକସହାୟକ ପ୍ରବନ୍ଧ



## କିଣ୍ଡାରଗାର୍ଟନ

ଏହା ଗୋଟିଏ ଜର୍ମାନ୍ ଶବ୍ଦ । କିଣ୍ଡାର ଅର୍ଥ ଶିଶୁ ଏବଂ ଗାର୍ଟନ୍‌ର ଅର୍ଥ ଉଦ୍ୟାନ । ତେଣୁ ସମ୍ପୂର୍ଣ୍ଣ ଶବ୍ଦଟିର ଆକ୍ଷରିକ ଅର୍ଥ ଶିଶୂଦ୍ୟାନ, ଅର୍ଥାତ୍ ବିଦ୍ୟାଳୟ ଉଦ୍ୟାନସ୍ୱରୂପ । ଏତିକି କହିଲେ ଉପର୍ଯ୍ୟୁକ୍ତ ଶବ୍ଦଟିର ଅର୍ଥ ଠିକ୍ ସୂଚିତ ହେଲା ନାହିଁ । ବିଦ୍ୟାଳୟକୁ ଉଦ୍ୟାନଭୂମି ସହିତ; ବାଳକମାନଙ୍କୁ ତରୁଲତା ସହିତ ଏବଂ ଶିକ୍ଷକଙ୍କୁ ଉଦ୍ୟାନରକ୍ଷକଙ୍କ ସହିତ ତୁଳନା କରାଯାଇପାରେ । ଉଦ୍ୟାନରକ୍ଷକଙ୍କର ତତ୍ତ୍ୱାବଧାନରେ ଏବଂ ତାଙ୍କର ଚେଷ୍ଟାରେ ଯେପରି ଉଦ୍ୟାନସ୍ଥ ତରୁଲତାମାନେ ପୁଷ୍ପଫଳରେ ପରିଶୋଭିତ ହୁଅନ୍ତି, ଠିକ୍ ସେହିପରି ଶିକ୍ଷକଙ୍କ ପରିଚାଳନା ଏବଂ ଉପଦେଶଦ୍ୱାରା କୋମଳମତି ଶିଶୁଙ୍କର ବିକାଶ ସାଧିତ ହୁଏ ।

ଏହି ତୁଳନା ପ୍ରତି ଦୃଷ୍ଟି ରଖି ଯେଉଁ ଶିଶୁଶିକ୍ଷା ପ୍ରଣାଳୀ ସ୍ଥିର କରାଯାଇ ଅଛି ତାହା କିଣ୍ଡାରଗାର୍ଟନ ନାମରେ ଅଭିହିତ । ଏହାର ପ୍ରବର୍ତ୍ତକ ଜର୍ମାନ୍‌ଦେଶର ଫ୍ରୋବେଲ ସାହେବ । ଏହାଙ୍କର ବାଲ୍ୟକାଳର କତିପୟ ଘଟଣା ତାଙ୍କର ଜୀବନକୁ ଅତି ଆଶ୍ଚର୍ଯ୍ୟଜନକ ଭାବରେ ପରିବର୍ତ୍ତିତ କରାଇ ଦେଇଥିଲା । ତାଙ୍କୁ ଏକ ବର୍ଷ ହେବା ପୂର୍ବରୁ ତାଙ୍କର ମାତା ପରଲୋକପ୍ରାପ୍ତ ହେଲେ । ତେଣୁ ସେ ଭୃତ୍ୟମାନଙ୍କ ଲାଳନପାଳନରେ ବଢ଼ିବାକୁ ଲାଗିଲେ । ତାଙ୍କର ପିତା

ଗୃହକାର୍ଯ୍ୟର ସୁପରିଚାଳନା ପାଇଁ ଦ୍ୱିତୀୟ ଦାର ପରିଗ୍ରହଣ କଲେ । କିନ୍ତୁ ଫ୍ରୋବେଲ ବିମାତାଙ୍କର ସ୍ନେହରୁ ବଞ୍ଚିତ ହେଲେ, କାରଣ ବିମାତା ନିଜର ଅପତ୍ୟମାନଙ୍କ ଲାଳନପାଳନରେ ବ୍ୟସ୍ତ ରହିଲେ । ଏହା ଦେଖି ଫ୍ରୋବେଲଙ୍କର ପିତା ତାହାଙ୍କୁ ଉଦ୍ୟାନ କାର୍ଯ୍ୟରେ ନିଯୁକ୍ତ କରାଇଲେ । ବୃକ୍ଷମୂଳରେ ଜଳସିଞ୍ଚିବା, ଅଙ୍କୁରୋଦ୍‌ଗମ କରାଇବା, ବୃକ୍ଷଲତାଙ୍କୁ କୀଟ ଭୟରୁ ରକ୍ଷାକରାଇବା ପ୍ରଭୃତି କାର୍ଯ୍ୟ କରି ସେ ମାତୃଶୋକ ଏବଂ ବିମାତାଙ୍କର ଔଦାସୀନ୍ୟ ଅତିଶୀଘ୍ର ପାଶୋରି ପକାଇଲେ । ସେତିକି ନୁହେଁ । ସେ ତରୁଲତାମାନଙ୍କୁ ନିରୀକ୍ଷଣ କରି ଅପାର ଆନନ୍ଦ ଲାଭ କଲେ । ସେହି ଦିନରୁ ପ୍ରକୃତିପାଠ ଅର୍ଥାତ୍ ତରୁଲତାଙ୍କର ବୃଦ୍ଧି ଲକ୍ଷ୍ୟ କରିବା ତାଙ୍କ ଜୀବନର ପ୍ରଧାନ ଅବଲମ୍ବନ ହେଲା । ଏହି ଜ୍ଞାନ ଉପରେ ତାଙ୍କର କିଣ୍ଡାରଗାର୍ଟେନ ପ୍ରଣାଳୀ ପର୍ଯ୍ୟବସିତ ।

ଥରେ ଫ୍ରୋବେଲଙ୍କର ଗ୍ରାମର କେତେକ ଲୋକ ଗୋଟାଏ ଗୀର୍ଜ୍ଜା ମରାମତି କରୁଥିଲେ । ଏହା ଦେଖି ଉକ୍ତ କାର୍ଯ୍ୟକୁ ଅନୁକରଣ କରିବା ପାଇଁ ଫ୍ରୋବେଲଙ୍କ ମନରେ ସ୍ପୃହା ଜନ୍ମିଲା । ତହୁଁ ସେ ଗୋଟାଏ ଗୃହ ନିର୍ମାଣ କରିବା ପାଇଁ ଇଚ୍ଛାକଲେ । ସେ ତାଙ୍କର ସମସ୍ତ ଶକ୍ତି ପ୍ରୟୋଗ କରି ଉପକରଣମାନ ସଂଗ୍ରହ କଲେ । କିନ୍ତୁ ପରିଶେଷରେ ନାନା ଅସୁବିଧା ହେତୁରୁ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । ତେଣୁ ତାଙ୍କ ମନରେ ନୈରାଶ୍ୟ ଜନ୍ମିଲା । ଅଭୀଷ୍ଟ ସିଦ୍ଧ ହୋଇଥିଲେ ସେ ଯେତିକି ଆନନ୍ଦଲାଭ କରିଥାନ୍ତେ/ ବର୍ତ୍ତମାନ ତାଙ୍କର ନୈରାଶ୍ୟ ଅଧିକ ବଳିଗଲା । ଏହି ଘଟଣା ବର୍ଣ୍ଣନା କରିବାକୁ ଯାଇ ସେ କହନ୍ତି ଯେ ଶିଶୁମାନଙ୍କର ଗଠନ କରିବା ପ୍ରବୃତ୍ତି ପ୍ରତି ଯଥୋଚିତ ଦୃଷ୍ଟିଦେବା ଉଚିତ । ଏହି ପ୍ରବୃତ୍ତିର ବିକାଶ ନିମିତ୍ତ ପଥ ଉନ୍ମୁକ୍ତ କରି ରଖିବାକୁ ହେବ । ସମ୍ଭବତଃ

ଶୈଶବକାଳୀନ ତାଙ୍କର ଏହି ଅନୁଭୂତି ଯୋଗୁଁ ସେ ତାଙ୍କର କିଣ୍ଡାରଗାର୍ଟେନ ପ୍ରଣାଳୀରେ କ୍ରୀଡ଼ା ଓ କ୍ରୀଡ଼ା ସାମଗ୍ରୀ ଉଦ୍ଭାବନ କରିଥିଲେ । [illegible]

ତାଙ୍କୁ ଗ୍ରାମର ବାଳିକା ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ପଡ଼ିଥିଲା । ସେଠାରେ ସେ ବାଇବେଲ ଓ ଭଜନ ଦଶ ବର୍ଷ ପର୍ଯ୍ୟନ୍ତ ପଢ଼ିଥିଲେ । ତତ୍ପରେ ସେ ତାଙ୍କର ମାତୁଳଙ୍କ ଗୃହରେ ରହି ଶିକ୍ଷାଲାଭ କରିଥିଲେ । ସେ ଯୁଗର ଶିକ୍ଷା ବାସ୍ତବ ଜଗତ ସହିତ ଆଦୌ ସମ୍ପୃକ୍ତ ନ ଥିଲା । ଶୁଷ୍କ ପରି ପୁସ୍ତକ ମୁଖସ୍ଥ କରିବାକୁ ସେ ଘୃଣା କରୁଥିଲେ । ସେ ପନ୍ଦର ବର୍ଷ ବୟସରେ ଜରିପ ଓ ଅରଣ୍ୟରକ୍ଷଣ କାର୍ଯ୍ୟ ଶିକ୍ଷା କରିଥିଲେ । ଜର୍ମାନୀର ପ୍ରସିଦ୍ଧ ଯେନା ବିଶ୍ୱବିଦ୍ୟାଳୟରେ କିଛିକାଳ ଶିକ୍ଷା କରିସାରି ସେ କୃଷି ଶିକ୍ଷା ଲାଭ କଲେ । ଏହାପରେ କିଛିକାଳ ଅତିବାହିତ ହେଲାପରେ ସେ ଶିକ୍ଷକତା କାର୍ଯ୍ୟ କରି ଜୀବିକା-ନିର୍ବାହ କରିବାକୁ ମନ ବଳାଇଲେ ।

ଫ୍ରୋବେଲ ପେଷ୍ଟାଲଟ୍‌ସି ନାମକ ଜନୈକ ମହାତ୍ମାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହି ମହାତ୍ମା ଶିକ୍ଷାଦାନ ପ୍ରଣାଳୀକୁ ସଂସ୍କାର ଓ ନିୟମାବଳୀ କେତେ ପୁସ୍ତକମାନ ପ୍ରଣୟନ କରିଥିଲେ । କିନ୍ତୁ ନିଜେ ସେ ସବୁକୁ କାର୍ଯ୍ୟରେ ପରିଣତ କରିବାର ସୁଯୋଗ ଆଦୌ ପାଇ ନ ଥିଲେ । ବର୍ତ୍ତମାନ ଫ୍ରୋବେଲ ପେଷ୍ଟାଲଟ୍‌ସିଙ୍କ ମତର ଉପାଦେୟତା ଅନୁଭବ କରି ଉକ୍ତ ମତକୁ କାର୍ଯ୍ୟରେ ଲଗାଇଲେ । ସେ ଅବସର ସମୟରେ ଶିକ୍ଷାଦାନ କାର୍ଯ୍ୟ ବିଷୟରେ ଚିନ୍ତା କରୁଥିଲେ । ଅଳ୍ପବୁଦ୍ଧିବଳରେ ନିଜ ଜୀବନର ଅନୁଭୂତିମାନ ମନେ ପକାଇ ତଦନୁଯାୟୀ ନିଜର ଭବିଷ୍ୟତ ପନ୍ଥା ସ୍ଥିର କଲେ । ନାନା

ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରୁଥିଲାବେଳେ ସେ ନିଜର ସାଧାରଣ ଜ୍ଞାନ, ଅନୁଭୂତି ଏବଂ ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଇ ଉତ୍କୃଷ୍ଟ ପନ୍ଥା ବାହାର କରୁଥିଲେ ।

ସେ ଶିକ୍ଷକତା କାର୍ଯ୍ୟ କରି ସୁଦ୍ଧା ନିଜେ ଶିକ୍ଷା କରିବାକୁ ଲଜ୍ଜାର ବିଷୟ ବୋଲି ମନେ କରୁ ନ ଥିଲେ । ସେ ଅଧିକ ନୈପୁଣ୍ୟ ଲାଭ କରିବା ଆଶାରେ ବର୍ଲିନ ବିଶ୍ୱବିଦ୍ୟାଳୟରେ ପ୍ରାକୃତିକ ବିଜ୍ଞାନ ଓ ଭାଷା ଶିକ୍ଷା କରିଥିଲେ । ସେ ନିଜ ଜୀବନରେ ଆଳସ୍ୟ ଏବଂ ଶୈଥିଲ୍ୟକୁ ସ୍ଥାନ ଦେଉ ନ ଥିଲେ । ରକ୍ଷଣଶୀଳତା ଅନେକ ଶିକ୍ଷକଙ୍କର ପ୍ରତିଭାକୁ ନଷ୍ଟ କରିଦିଏ । କୌଣସି ପ୍ରଣାଳୀ ଯେତେ ଉତ୍କୃଷ୍ଟ ହେଲେ ସୁଦ୍ଧା ନିଜର ସାଧାରଣ ଜ୍ଞାନକୁ ଉତ୍ସର୍ଗ କରି ସେହି ପ୍ରଣାଳୀର ଦାସତ୍ୱ ସ୍ୱୀକାର କରିବା ଏକାନ୍ତ ଅନୁଚିତ । ଫ୍ରୋବେଲ୍ ଏହି ମତର ପ୍ରଧାନ ପୃଷ୍ଠପୋଷକ ଥିଲେ । ସେ ସବୁବେଳେ ପରୀକ୍ଷା କରି ଯେଉଁଟି ଉପାଦେୟ ତାହା ଗ୍ରହଣ କରୁଥିଲେ ।

ତାଙ୍କର ଏହିସବୁ ଗୁଣ ଥିବାରୁ ସେ ତାଙ୍କ ପ୍ରବର୍ତ୍ତିତ ଅଭିନବ କିଣ୍ଡାରଗାର୍ଟେନ ପ୍ରଣାଳୀ ପାଇଁ ଆଜି ଚିରସ୍ମରଣୀୟ । ୧୮୩୭ ଖ୍ରୀଷ୍ଟାବ୍ଦ ଠାରୁ ଶିକ୍ଷା ଜଗତରେ ଏକ ନୂତନ ଯୁଗର ସୃଷ୍ଟି ହେଲା—ଏହି ସମୟଠାରୁ କିଣ୍ଡାରଗାର୍ଟେନ ପ୍ରଣାଳୀ ସର୍ବ ପ୍ରଥମେ ବ୍ଲାଙ୍କେନବର୍ଗ ନଗରରେ ପରୀକ୍ଷିତ ହେଲା ।

**କିଣ୍ଡାରଗାର୍ଟେନର ବୈଶିଷ୍ଟ୍ୟ :—** (୧) ଫ୍ରୋବେଲଙ୍କର ଶୈଶବକାଳ ନିର୍ଜ୍ଜନରେ ଅତିବାହିତ ହୋଇଥିଲା । ତେଣୁ ତାଙ୍କୁ ପ୍ରକୃତିର ଉପାସନା କରିବାକୁ ପଡ଼ିଥିଲା । ସେ ପ୍ରକୃତିର ଜଣେ ଶ୍ରେଷ୍ଠ ଉପାସକ । ପ୍ରକୃତି ତାଙ୍କର ଶିକ୍ଷାଦାତା । ଏହି ପ୍ରକୃତିର ପ୍ରେରଣାରେ ସେ ଜଗତ ସମକ୍ଷରେ ଏହି ଅଭିନବ ଶିଶୁଶିକ୍ଷା ପ୍ରଣାଳୀ ଉପସ୍ଥାପନ

କରିବାକୁ ସମର୍ଥ ହୋଇଥିଲେ । ସେହି କାରଣରୁ ସେ ପ୍ରକୃତିପାଠ ପ୍ରତି ଶିଶୁମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛନ୍ତି । ଶିଶୁ ପ୍ରକୃତିର ସୌନ୍ଦର୍ଯ୍ୟରେ ବିମୁଗ୍ଧ ହେଉ । ତାର ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ କୌତୂହଳୀ ହୋଇ ଜ୍ଞାନଲାଭ କରୁ । ଶିଶୁ ଜୀବନ୍ତ ପ୍ରାଣୀମାନଙ୍କୁ ଭଲ ପାଉ । ସେ ପ୍ରକୃତିର ସହାୟତାରେ ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରୁ— ଏହାହିଁ ପ୍ରକୃତିପାଠର ମୂଳନୀତି ।

ପ୍ରକୃତିର ବିରାଟ ଗ୍ରନ୍ଥ ଅଧ୍ୟୟନ କରିବାକୁ ଶିଶୁ ତାହାର ଅଣ୍ଟ-ନିଯୋଗ କରିବା ପାଇଁ ମୂଳରୁ ପ୍ରସ୍ତୁତ ହେଉ । ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ଏବଂ ପ୍ରାକୃତିକ ଘଟଣା ପର୍ଯ୍ୟବେକ୍ଷଣ କରିବା ପାଇଁ ତାର ଇନ୍ଦ୍ରିୟମାନ ସର୍ବଦା ଉନ୍ମୁକ୍ତ ରହୁ । ସେ ଅବଶ୍ୟ କ୍ଷୁଦ୍ର ଶିଶୁ-ମାନଙ୍କୁ ବିଜ୍ଞାନ ଶିକ୍ଷାଦେବାକୁ ଚାହାନ୍ତି ନାହିଁ । କିନ୍ତୁ ପ୍ରକୃତିର ସମ୍ପର୍କରେ ଆସି ଶିଶୁର ଆଗ୍ରହ, କଳ୍ପନା, କୌତୂହଳ, ଚିନ୍ତାଧାରା ବିକଶିତ ହେଉ ଏବଂ ତାହାର ଜ୍ଞାନ ପିପାସା ବୃଦ୍ଧି ଲଭୁ—ଏହା ତାଙ୍କର ଲକ୍ଷ୍ୟ ।

(୨) **ଏକତା** :—ଫ୍ରୋବେଲ୍ ସର୍ବବ ଏକପ୍ରକାର ଏକତା ଦେଖିଥିଲେ । ସାଧାରଣ ଦୃଷ୍ଟିଏ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ସହିତ ସଂପୃକ୍ତ । ତରୁଲତାମାନଙ୍କର ବୃଦ୍ଧି ସହିତ ମାନବ ଶିଶୁର ବୃଦ୍ଧିର ସମନ୍ୱୟ ଅଛି । ତେଣୁ [illegible] ମୂଳରୁ ସେହି ଦିଗରେ ଚେଷ୍ଟା କରିବାକୁ ହେବ । ମନୁଷ୍ୟ ଜୀବନର ବିଭିନ୍ନ ଅବସ୍ଥା ମଧ୍ୟ ପରସ୍ପର ସଂପୃକ୍ତ । ଶୈଶବକାଳୀନ ଶିକ୍ଷା ଯଥାଯଥ ମାର୍ଗରେ ଗଲେ ନ ଗଲେ ଉତ୍ତରବର୍ତ୍ତୀ ଅବସ୍ଥାରେ ସୁଫଳ ଆଶା କରିବା ବିଡ଼ମ୍ବନା ମାତ୍ର । ଫଳରେ ମାନବ ଜୀବନ ବୃଥା ହୋଇଯାଏ ।

(୩) **ଆତ୍ମ ଚେଷ୍ଟା :—** ଅମନୋଯୋଗୀ ଛାତ୍ରର କାର୍ଯ୍ୟକୁ ସାଧାରଣତଃ ଅମ୍ଭେମାନେ କହୁଁ "ମନ ଦେଉଛୁ ଏଣି ତେଣିକି, ହାତ ପାତୁଛୁ ଗୁଡ଼ଆଣିକି ।" ବହି ଉପରେ ଆଖି ଥାଏ; କିନ୍ତୁ ପାଠ ସହିତ କୌଣସି ସମ୍ପର୍କ ନ ଥାଏ । ପାଠରେ ଅଭିନିବେଶ ଆଦୌ ଥାଏ ନାହିଁ । ଏହାର କାରଣ କଅଣ ? ଆତ୍ମଚେଷ୍ଟାର ଅଭାବହିଁ ଏହି ପ୍ରଶ୍ନର ବିହିତ ଉତ୍ତର ଦେବ ।

ଶିଶୁ ଯେତେବେଳେ ଯେଉଁ କାମ କରିବ ସେଥିରେ ତାହାର ଦେହ ଓ ମନ ସ୍ୱତଃ ପ୍ରଣୋଦିତ ହେଲେ ସେ ସେହି କାମରେ ପ୍ରୟାସୀ ହେବ । ତାହାର ସମସ୍ତ ପ୍ରବୃତ୍ତି ସେଥିରେ ସ୍ୱତଃ ନିୟୋଜିତ ହେବ । ଆତ୍ମଚେଷ୍ଟା ଥିଲେ, ଶିଶୁ ଆପେ ଆପେ ପ୍ରଣୋଦିତ ହୋଇ କାମ କରିବ । ଏହାଦ୍ୱାରା ଶିଶୁର ସର୍ବାଙ୍ଗୀନ ଉନ୍ନତି—ନୈତିକ, ମାନସିକ ଏବଂ ଦୈହିକ ସାଧିତ ହେବ; କାରଣ ଆତ୍ମଚେଷ୍ଟା ଥିଲେ ଶିଶୁର ସମସ୍ତ ଶକ୍ତି ବିକଶିତ ହେବ । କ୍ରୀଡ଼ା ଆତ୍ମଚେଷ୍ଟାର ପ୍ରତୀକ । ଏହା ଶିଶୁ ପକ୍ଷରେ ଅତ୍ୟନ୍ତ ପ୍ରୀତିପ୍ରଦ, ସ୍ୱାଭାବିକ ଓ ଚିତ୍ତାକର୍ଷକ । ତେଣୁ ଫ୍ରୋବେଲ୍ ତାଙ୍କ ଶିଶୁଶିକ୍ଷା ପ୍ରଣାଳୀରେ କ୍ରୀଡ଼ାକୁ ଖୁବ୍ ଉଚ୍ଚ ସ୍ଥାନ ଦେଇଅଛନ୍ତି । ସେଥିପାଇଁ ମଧ୍ୟ ବହୁ ସାମଗ୍ରୀର ଆୟୋଜନ କରା ହୋଇଅଛି । ଏହି ଆତ୍ମଚେଷ୍ଟାର ସଦ୍‌ବ୍ୟବହାର କରିବା ଲାଗି କର୍ମସଙ୍ଗୀତକୁ ( ଗୀତସହ ଖେଳ ଓ ଅଭିନୟ ) ମଧ୍ୟ ପାଠ୍ୟତାଲିକାରେ ସ୍ଥାନ ଦେଇଅଛନ୍ତି ।

(୪) **ଚିତ୍ରାଙ୍କନ :—**ଆତ୍ମପ୍ରକାଶ ପାଇଁ ଏହା ବିଶେଷଭାବରେ ସହାୟକ । ତେଣୁ ପାଠ୍ୟତାଲିକାରେ ଏଥିପାଇଁ ବିଧାନ କରା ହୋଇଅଛି । ଶିଶୁମାନେ ବାଲି ପଠାଲିରେ କିମ୍ବା ଅଙ୍ଗାର ସାହାଯ୍ୟରେ ଚଳେ ଚିତ୍ର କାଟିବେ । ସେମାନଙ୍କର ଚିତ୍ର ଅତି କଦର୍ଯ୍ୟ ହୋଇପାରେ;

କିନ୍ତୁ ସେମାନେ ଯଦି କହନ୍ତି ଯେ ଏହା ତାଙ୍କର ପରିଚିତ ବଳଦ ଗାଈ ବା ବଗଡ଼ ବା ଅନ୍ୟ କିଛି ତାହାହେଲେ ଶିକ୍ଷକ ତାହାକୁ ଗ୍ରହଣ କରିବେ । ମନର ଭାବ ବ୍ୟକ୍ତ କରୁଥିବା ଯେ କୌଣସି ଚିତ୍ର ଛାତ୍ରମାନେ କାଟି ପାରିବେ ।

( ୫ ) **ଶିକ୍ଷୟିତ୍ରୀ:**—କିଣ୍ଡାରଗାର୍ଟନ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଏକାନ୍ତ ଅବଶ୍ୟକ । ସେମାନଙ୍କର ସ୍ୱଭାବ ମୂଳକ ଦୟା, ପ୍ରେମ, ଧୈର୍ଯ୍ୟ, ସ୍ନେହ, କୌଶଳ ପ୍ରଭୃତି ସ୍ୱର୍ଗୀୟ ଗୁଣ ପାଇଁ ସେମାନେ ଶିଶୁମାନଙ୍କୁ ଶିକ୍ଷା ଦେବାଲାଗି ଉପଯୁକ୍ତ—ଏହା ଫ୍ରୋବେଲ ବୁଝିଥିଲେ । ତେଣୁ କିଣ୍ଡାରଗାର୍ଟନର ପରିଚାଳିକା-ଶିକ୍ଷୟିତ୍ରୀ ।

(୬) **ଇନ୍ଦ୍ରିୟାନୁଭୂତି** ମଧ୍ୟ ଶିକ୍ଷା ଦେବାକୁ ହେବ । ଚକ୍ଷୁ, କର୍ଣ୍ଣ, ନାସିକା ପ୍ରଭୃତି ଇନ୍ଦ୍ରିୟମାନଙ୍କୁ ସର୍ବଦା ଜାଗରୂକ ଓ ଉନ୍ମୁକ୍ତ ରଖିବା ଉଚିତ ।

ଫ୍ରୋବେଲ ବହୁଦିନରୁ ମାନବଲୀଳା ସମ୍ବରଣ କଲେଣି । କିନ୍ତୁ ତାଙ୍କର କିଣ୍ଡାରଗାର୍ଟନ ପ୍ରଣାଳୀ ପ୍ରତି ବିଦ୍ୟାଳୟରେ ପ୍ରଚଳିତ । ଆମ୍ଭ-ମାନଙ୍କ ଦେଶରେ ମଧ୍ୟ ଏହାର ବହୁଳ ବ୍ୟବହାର କରାହେଉଥିଲା । ବର୍ତ୍ତମାନ ଆମର ପ୍ରାଥମିକ ପାଠ୍ୟ ତାଲିକାରେ ଯେଉଁ ସବୁ ବିଷୟ ସ୍ଥାନ ପାଇଅଛି ତନ୍ମଧ୍ୟରୁ ଅଧିକାଂଶ କିଣ୍ଡାରଗାର୍ଟନ ନିୟମା-ନୁଯାୟୀ ନିର୍ବାଚିତ । ସେଥିପାଇଁ ଆମ୍ଭେମାନେ ତାଙ୍କଠାରେ ଋଣୀ । କର୍ମସଙ୍ଗୀତ, କ୍ରୀଡ଼ା ଓ ଇନ୍ଦ୍ରିୟାନୁଭୂତି, ଚିତ୍ରାଙ୍କନ, ସହଜନିର୍ମାଣ, ଆଦର୍ଶ ଗଠନ, କଥୋପକଥନ, ଗଳ୍ପକଥନ, ପ୍ରକୃତିପାଠ ପ୍ରଭୃତି ଫ୍ରୋବେଲଙ୍କର ଅବଦାନ । ସେ ଶିଶୁ ଶିକ୍ଷାପଦ୍ଧତିରେ ଯୁଗାନ୍ତର ସୃଷ୍ଟି କରିଅଛନ୍ତି ।

ସେ ଶିଶୁମାନଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ସେଥିପାଇଁ ଶିକ୍ଷକମାନଙ୍କ ପ୍ରତି ତାଙ୍କର ନୀତିବାକ୍ୟ ଥିଲା "Come, let us live with our children." ବାସ୍ତବରେ ଶିଶୁର ଅଭାବ ସେ କେବଳ ଅନୁଭବ କରିପାରିଥିଲେ । ତେଣୁ ସେ ଜଗତକୁ କିଣ୍ଡାରଗାର୍ଟେନ ପ୍ରଣାଳୀ ଦାନ କରିଥିଲେ ।

---

## ଶିଶୁଶିକ୍ଷା-ବିଶାରଦ ମଣ୍ଟେଶରୀ

ମଣ୍ଟେଶରୀ ଜଣେ ମହିଳା । ସେ ଇଟାଲି ଦେଶରେ ଜନ୍ମଗ୍ରହଣ କରିଥିଲେ । ଫ୍ରୋବେଲଙ୍କ ପରେ ଏହି ମହିଳାଙ୍କ ସାଧନା ଓ ଚେଷ୍ଟା ଫଳରେ ଶିକ୍ଷା ଜଗତରେ ଉନ୍ନତ ସଂଗଠିତ ହୋଇଥିଲା । ଏହି ବିଦୁଷୀ ରୋମ ବିଶ୍ୱବିଦ୍ୟାଳୟରେ ଡାକ୍ତରୀ ପଢିଥିଲେ । ଉକ୍ତ ବିଶ୍ୱ-ବିଦ୍ୟାଳୟରେ ସେ ଅସାଧାରଣ ବ୍ୟୁତ୍ପତ୍ତି ଏବଂ ପାଣ୍ଡିତ୍ୟ ଦେଖାଇ ଥିଲେ । ତେଣୁ ସେ ଡାକ୍ତର ଉପାଧି ( Doctor of medicine ) ଲାଭ କରିଥିଲେ । ଏହି ପ୍ରକାର ଉପାଧି ଲାଭ କରିବା ଦିଗରେ ସେଯୁଗର ମହିଳାମାନଙ୍କ ମଧ୍ୟରେ ସେ ଅଗ୍ରଣୀ ଥିଲେ ।

ମଣ୍ଟେଶରୀଙ୍କ ପରିଦର୍ଶ ପୂର୍ବରୁ ସେଗୁଇନ ( Seguin ) ଏବଂ ଇଟାର୍ଡ ( Itard ) ନାମକ ଦୁଇଜଣ ଡାକ୍ତର ମୂକବଧିର-ମାନଙ୍କ ବିଷୟ ଗବେଷଣା କରି ସେମାନଙ୍କୁ ଶିକ୍ଷାଲୋକ ଦେବା ଲାଗି ନାନା ପ୍ରଣାଳୀ ସ୍ଥିର କରି ଯାଇଥିଲେ । ଦର୍ତ୍ତମାନ ମଣ୍ଟେଶରୀ ଏହି ଦୁଇ ମହାତ୍ମାଙ୍କର ପଦାଙ୍କ ଅନୁସରଣ କରିଥିଲେ । ସେ ସେମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ମୂକବଧିର କିମ୍ବା ସ୍ଥୂଳବୁଦ୍ଧି-ସମ୍ପନ୍ନ ବାଳକମାନେ କିପରି ଶିକ୍ଷା ପାଇବେ, ସେ ଦିଗରେ ମନ

ବଳାଇଲେ । ତାଙ୍କ ହୃଦୟର ଅନୁଭବ ହେଲା ଯେ ଯେଉଁମାନେ ଦୈହିକ ବୈକଲ୍ୟ ହେତୁରୁ ଶିକ୍ଷାରୁ ବଞ୍ଚିତ ସେମାନଙ୍କୁ ଶିକ୍ଷା ଦିଆଯିବ । ନାରୀହୃଦୟର ସ୍ୱଭାବ ସୁଲଭ ଦୟା ତାଙ୍କ ନିକଟରେ ମୂର୍ତ୍ତିମନ୍ତ ହୋଇ ଦଣ୍ଡାୟମାନ ହେଲା । ତେଣୁ ସେ ଡାକ୍ତରୀ ଛାଡ଼ି ଏହି ଅବହେଳିତ, ଘୃଣ୍ୟ ଓ ଅଲ୍ପବୁଦ୍ଧିସମ୍ପନ୍ନ ବାଳକମାନଙ୍କୁ ଶିକ୍ଷା ଦେବାରେ ଲାଗିଲେ । କିଛିଦିନ କାର୍ଯ୍ୟ କରିସାରି ସେ ଯେଉଁ ପ୍ରଣାଳୀ ଉଦ୍ଭାବନ କଲେ ତାହା ସେ ସାଧାରଣ ଛାତ୍ରମାନଙ୍କଠାରେ ପରୀକ୍ଷା କରିବା ପାଇଁ ଇଚ୍ଛା କଲେ । ତାଙ୍କର ମଧ୍ୟ ପୂର୍ଣ୍ଣ ବିଶ୍ୱାସ ହେଲା ଯେ ଏହି ପ୍ରଣାଳୀମାନ ସାଧାରଣ ଛାତ୍ରଙ୍କଠାରେ ପ୍ରଯୁଜ୍ୟ ।

ଇଚ୍ଛାଥିଲେ ଭଗବାନ ସୁବିଧା ଯୋଗାଇ ଦିଅନ୍ତି । ଯେ ଜଗତର କଲ୍ୟାଣ ସାଧନ କରିବାପାଇଁ ବ୍ରତୀ ଭଗବାନ ତାଙ୍କର ଅଭିଳାଷ ଅପୂର୍ଣ୍ଣ ରଖନ୍ତି ନାହିଁ । ଏହି ସମୟରେ ଶିଶୁମାନଙ୍କୁ ଶିକ୍ଷା ଦେବାଲାଗି ଜଣେନିଜ ହେବ ହିତୈଷୀ ଗୋଟିଏ ବିଦ୍ୟାଳୟ ଗୃହ ଏବଂ କ୍ରୀଡ଼ାକ୍ଷେତ୍ର ସ୍ଥାପନ କରି ମଣ୍ଟେଶରୀଙ୍କୁ ଆହ୍ୱାନ କଲେ । ଏହି ସୁଯୋଗକୁ ଅବଲମ୍ବନ କରି ଡାକ୍ତର ମଣ୍ଟେଶରୀ ତାଙ୍କର ନୂତନ ବିଦ୍ୟାଳୟ ବସାଇଲେ । ଉକ୍ତ ବିଦ୍ୟାଳୟ କାସାଡି ବାମ୍ବିନୀ ( Casa dei Bambini ) ନାମରେ ନାମିତ ହେଲା । ଯେଉଁ ମଣ୍ଟେଶରୀ ପ୍ରଣାଳୀ ଶିଶୁଶିକ୍ଷା ଜଗତରେ ଆଜି ସର୍ବତ୍ର ସୁପରିଚିତ ତାହାର ଜନ୍ମସ୍ଥାନ ରୋମର "କାସାଡି ବାମ୍ବିନୀ" ।

**ମଣ୍ଟେଶରୀ ପ୍ରଣାଳୀର ବିଶେଷତ୍ୱ:**—(୧)ମଣ୍ଟେଶରୀ ଶିଶୁର ବ୍ୟକ୍ତିତ୍ୱ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରନ୍ତି ।

(୨) ଏହି ବ୍ୟକ୍ତିତ୍ୱର ସ୍ୱାଭାବିକ ବିକାଶ ପାଇଁ ସେ ଶିଶୁକୁ ସ୍ୱାଧୀନ ବାୟୁମଣ୍ଡଳରେ ଛାଡ଼ିବାକୁ କହନ୍ତି । ଶିଶୁର କାର୍ଯ୍ୟରେ ହସ୍ତକ୍ଷେପ

କରିବା ମାତକୁ ସେ ପ୍ରଶ୍ରୟ ଦଅନ୍ତି ନାହିଁ । ତେଣୁ ଶିଶୁ ମନ ଇଚ୍ଛା ସ୍ୱାଧୀନତା ପୂର୍ଣ୍ଣ ବାୟୁମଣ୍ଡଳରେ ସ୍ୱତଃ ପ୍ରବୃତ୍ତ ହୋଇ କାମ କରୁ—ଏହା ଉପରେ ମଣ୍ଟେଶରୀ ଜୋର ଦଅନ୍ତି ।

(୩) ସେ ଇନ୍ଦ୍ରିୟାନୁଭୂତକୁ ସର୍ବପ୍ରଥମ ସ୍ଥାନ ଦଅନ୍ତି । ଇନ୍ଦ୍ରିୟ-ମାନଙ୍କୁ ତାଲିମ କରାଇବା ମାନସିକ ଅନୁଶୀଳନ ଏବଂ କର୍ଷଣରେ ନୂତୋଭ୍ରସ ଅଟେ । କାରଣ ଇନ୍ଦ୍ରିୟମାନେ ଜ୍ଞାନଲାଭରଦ୍ୱାର ସ୍ୱରୂପ ଅଟନ୍ତି । ଇନ୍ଦ୍ରିୟମାନେ ଅବହେଳିତ ହେଲେ ମାନସିକ ବୃତ୍ତିଚୟ ପୂର୍ଣ୍ଣ ଅଭିବୃଦ୍ଧି ଲାଭ କରି ପାରିବେ ନାହିଁ । ତେଣୁ ତାଙ୍କର ଉପକରଣ ପ୍ରଧାନତଃ ଇନ୍ଦ୍ରିୟମାନଙ୍କୁ ଉଚିତ ମାର୍ଗରେ ତାଲିମ କରାଇବା ପାଇଁ ଅଭିପ୍ରେତ ।

( ୪ ) ତାଙ୍କର ଉପକରଣ ଡାଇଡେକ୍‌ଟିକ୍ ମେଟିରିଏଲ (Didactic material) ରେ ଇନ୍ଦ୍ରିୟମାନଙ୍କର ଅନୁଭୂତ ଜନ୍ମାଇବା ଲାଗି ତିନି ରକମର କାଠଖଣ୍ଡମାନ ଥାଏ—ଘନଚତୁଷ୍କୋଣ (Cubes), ଘନତ୍ରିକୋଣ ( prisms ) ଏବଂ ଲମ୍ବ କାଠ (rods), ପ୍ରତ୍ୟେକ କାଠରେ ୧୦ ଗୋଟି ଛୋଟ ଛୋଟ ବୃତ୍ତସ୍ତମ୍ଭ (cylinder) ପୂରାଇବା ଲାଗି ସ୍ଥାନ କରା ହୋଇଥାଏ । ଏହି ବୃତ୍ତସ୍ତମ୍ଭମାନ ଛୋଟ ବଡ଼ କରି ତିଆରି କରା ହୋଇଥାଏ । ବିଭିନ୍ନ ଜ୍ୟାମିତିକ ପ୍ରକୃତି ବିଶିଷ୍ଟ କାଠଖଣ୍ଡମାନ ଥାଏ । ପିଲାମାନେ ବୃତ୍ତସ୍ତମ୍ଭ-ଗୁଡ଼ିକୁ ନେଇ ବିଭିନ୍ନ ସ୍ଥାନରେ ଖାପ ଖୁଆଇ ଭର୍ତ୍ତି କରାଇବେ । ଗୋଟିକ ପରେ ଗୋଟିଏ ନେଇ ଚେଷ୍ଟା କରିବେ ଏବଂ ପରିଶେଷରେ ଯେଉଁଟି ଠିକ୍ ଖାପ ଖାଇବ ସେଇଠାକୁ ପୂରାଇବେ ।

ଏହି ଉପକରଣକୁ ବ୍ୟବହାର କରିବା ପାଇଁ ଶିଶୁ ଅପେ ଆପେ ଇଚ୍ଛା କରିବ । ଅଧିକନ୍ତୁ ଏହାର ବୈଶିଷ୍ଟ୍ୟ ଏହି ଯେ ଶିଶୁ ଏହାଦ୍ୱାରା ନିଜର ଭୁଲ ନିଜେ ଜାଣିପାରିବ । ଏହି ଉପକରଣ

ସାହାଯ୍ୟରେ ଏବଂ ଅନ୍ୟଲୋକର ବିନା ସହାୟତାରେ ଶିଶୁ ନିଜର ଭୁଲ ମଧ୍ୟ ନିଜେ ସଂଶୋଧନ କରିପାରିବ । ଶିଶୁ ଯେତିକି ଥର ଏହାକୁ ଭାଙ୍ଗି ଠିକ୍ କରୁଥିବ ତାହାର ଆନନ୍ଦ ସେତିକି ମାତ୍ରାରେ ବଢୁଥିବ । ବୃତ୍ତସ୍ତମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ପାଇଁ ଗୋଟାଏ ନିର୍ଦ୍ଦିଷ୍ଟ ଗର୍ତ୍ତ ଥାଏ । ସେହି ନିର୍ଦ୍ଦିଷ୍ଟ ଗର୍ତ୍ତ ବିନା ଅନ୍ୟ ଗର୍ତ୍ତରେ ଏହା ପ୍ରବେଶ କରି ପାରିବ ନାହିଁ । ଦଶଗୋଟି ବୃତ୍ତସ୍ତମ୍ଭର ଆକୃତି ଅନୁଯାୟୀ ଦଶଗୋଟି ଗର୍ତ୍ତ ଥାଏ । କୌଣସି ଗୋଟାଏ ଗର୍ତ୍ତ ଗୋଟାଏ ବୃତ୍ତସ୍ତମ୍ଭ ପାଇଁ ବଡ଼ ହେଲେ ଏହା ସେଥିରେ ଖାପ ଖାଇବ ନାହିଁ । ତେଣୁ ଛାତ୍ର ଏ ପାଖ ସେ ପାଖ କରି ଅବଶେଷରେ ଉପଯୁକ୍ତ ଗର୍ତ୍ତ ବାହାର କରିବ ।

ଏହି ଉପକରଣ ବ୍ୟବହାର କରିବାରେ ଶିଶୁମାନେ ଅତ୍ୟଧିକ ଆଗ୍ରହ ପ୍ରକାଶ କରନ୍ତି । ଜଣେ ଜଣେ ଶିଶୁ କୌଣସି ଗୋଟିଏ ଦିନରେ ଚାଳିଶଥର ବ୍ୟବହାର କରି ସୁଦ୍ଧା କ୍ଳାନ୍ତ ହେବାର ଦେଖା ଯାଇ ନାହିଁ । ଏତଦ୍ଦ୍ୱାରା ଚକ୍ଷୁ ଏବଂ ହସ୍ତର ବ୍ୟବହାର ଶିକ୍ଷା କରାଯାଏ । ଦେଖିବା, ପର୍ଯ୍ୟବେକ୍ଷଣ କରିବା, ତୁଳନା କରିବା ଏବଂ ବିଚାର କରିବା ପ୍ରଭୃତି ମାର୍ଗରେ ମନ ଅନୁଶୀଳିତ ହୁଏ । ଆକୃତି, ରଙ୍ଗ, ସଂଖ୍ୟା ଏବଂ ଶବ୍ଦ ସମ୍ବନ୍ଧରେ ଜ୍ଞାନ ଜନ୍ମେ । ପରିଶେଷରେ ଲିଖନ ଓ ଲିଖନ ପରେ ପଠନ ଶିକ୍ଷା ଦିଆଯାଏ ।

( ୫ ) କୌଣସି ସମୟନିର୍ଘଣ୍ଟ ବା ରୁଟିନ ନ ଥାଏ । ଅବଶ୍ୟ କାର୍ଯ୍ୟରେ ଶୃଙ୍ଖଳା ଯଥାରୀତି ପ୍ରତିପାଳିତ ହୁଏ—ଯଥା, ଖାଇବା ପାଇଁ ସମୟ ନିରୂପିତ ହୋଇଥାଏ । କିନ୍ତୁ ସେ ପ୍ରକାର ଶ୍ରେଣୀ ବିଭାଗ ନ ଥାଏ ଯଦ୍ଦ୍ୱାରା ଛାତ୍ରମାନେ ଏକସମୟରେ ଗୋଟିଏ ପାଠାରମ୍ଭ କରି ଅନ୍ୟ ସମୟରେ ଶେଷ କରିବେ । ଶିଶୁମାନେ

ସ୍ୱେଚ୍ଛାପ୍ରଣୋଦିତ ହୋଇ କାମ ବାଛନ୍ତି । ସେଥିରେ ଲାଗନ୍ତି କିମ୍ବା ବିଶ୍ରାମ କରନ୍ତି । ତଥାପି ବିଶୃଙ୍ଖଳା ନ ଥାଏ । ଶୃଙ୍ଖଳା, ସନ୍ତୋଷ ଏବଂ ପାଠୋନ୍ନତି ପୂର୍ଣ୍ଣମାତ୍ରାରେ ରହିଥାଏ ।

**କିଣ୍ଡାରଗାର୍ଟେନ ଓ ମଣ୍ଟେଶରୀ ପ୍ରଣାଳୀ:—** ଫ୍ରୋବେଲ ଓ ମଣ୍ଟେଶରୀ ଦୁହେଁ ଶିଶୁର ବ୍ୟକ୍ତିତ୍ୱକୁ ସମ୍ମାନ କରନ୍ତି ଏବଂ ବ୍ୟକ୍ତିତ୍ୱର ବିକାଶ ପାଇଁ ସ୍ୱାଧୀନ ବାୟୁମଣ୍ଡଳ ଦାବି କରନ୍ତି । ଉଭୟେ ଶିକ୍ଷକ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଘୃଣା କରନ୍ତି । ଏହିପରି ଏହି ଦୁଇ ପଦ୍ଧତି ମଧ୍ୟରେ ଅନେକ ସାମଞ୍ଜସ୍ୟ ଅଛି । ଶିକ୍ଷା ଜଗତରେ ଏହି ଦୁଇ ମନୀଷୀଙ୍କର ସ୍ଥାନ ଅତି ଉଚ୍ଚରେ । ଶିଶୁଶିକ୍ଷାପାଇଁ ଏହି ଦୁହିଁଙ୍କର ଦାନ ସାଧାରଣ କଥାରେ ପ୍ରକାଶ କରି ହେବ ନାହିଁ । ଦୁହିଁଙ୍କର ପ୍ରଣାଳୀ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ମଣ୍ଟେଶରୀ ପାଠ୍ୟ ତାଲିକାରେ କଳ୍ପନାର ବିକାଶ ପାଇଁ କୌଣସି ବିଷୟ ଖୋଜି ପାଇ ନାହିଁ । ଗଳ୍ପକଥନକୁ ବାଦ ଦିଆଯାଇଛି । କାରଣ ଏହା ଶିଶୁକୁ ନେଇ ଏକ କାଳ୍ପନିକ ଜଗତରେ ପହଞ୍ଚାଇ ବାସ୍ତବତାଠାରୁ ଦୂରରେ ରଖିବ । ବାସ୍ତବ ଜଗତର ସମ୍ପର୍କରେ ଶିଶୁକୁ ଆଣିବା ପାଇଁ ମଣ୍ଟେଶରୀ ସର୍ବଦା ଚେଷ୍ଟା କରିଅଛନ୍ତି । କିନ୍ତୁ ଏ ବିଷୟରେ ଅନେକ ବାଦାନୁବାଦ ଏବଂ ମତଦ୍ୱୈଧ ଦେଖିବାକୁ ମିଳେ ।

ମଣ୍ଟେଶରୀ ନିଜେ ଶିକ୍ଷୟିତ୍ରୀ ଥିଲେ । ସେ ଶିଶୁର ମନ ପର୍ଯ୍ୟବେକ୍ଷଣ କରି ଯେଉଁ ପ୍ରଣାଳୀ ବାହାର କରିଅଛନ୍ତି, ତାହା ପ୍ରତ୍ୟକ୍ଷ-ଫଳପ୍ରଦ । ତାଙ୍କର ବିଦ୍ୟାଳୟ ଗୃହ ଅପେକ୍ଷା ଅଧିକ ଅଧିକ ଆକର୍ଷକ । ଶିଶୁମାନେ ଗୃହଛାଡ଼ି ବିଦ୍ୟାଳୟରେ ରହିବାକୁ ଭଲ ପାଆନ୍ତି । ସେମାନେ ମାତୃକୋଡ଼ ଛାଡ଼ି ଶିକ୍ଷୟିତ୍ରୀଙ୍କର ସ୍ନେହ, ସୌହାର୍ଦ୍ଦ୍ୟ ଏବଂ କୋମଳ ବ୍ୟବହାର ପାଇଁ ଲାଳାୟିତ ହୁଅନ୍ତି ।

ପରିଶେଷରେ ସୁଖର କଥା ଏହି ଯେ ଡାକ୍ତର ମଣ୍ଟେଶରୀ ଅଳ୍ପଦିନ ତଳେ ଭାରତବର୍ଷକୁ ଆସିଥିଲେ । ସେ ମାନ୍ଦ୍ରାଜପ୍ରଦେଶସ୍ଥ ଅଦ୍ୟାରରେ ତାଙ୍କ ପ୍ରବର୍ତ୍ତିତ ପ୍ରଣାଳୀର ପରୀକ୍ଷା କରିଥିଲେ । ତାଙ୍କଠାରୁ ପ୍ରତ୍ୟକ୍ଷ ଭାବରେ ଶିକ୍ଷା କରିବା ପାଇଁ ଭାରତବର୍ଷର ବିଭିନ୍ନ ପ୍ରଦେଶରୁ ବିଶେଷତଃ ଓଡ଼ିଶାରୁ ଶିକ୍ଷୟିତ୍ରୀମାନେ ଯାଇଥିଲେ । ତାଙ୍କ ପ୍ରଣାଳୀ କ୍ରମେ ପ୍ରସାର ଲାଭ କରିବ । ଶିଶୁ ନିଜର ବ୍ୟକ୍ତିତ୍ୱର ବିକାଶ କରି ଦେଶର ଓ ଦଶର କଲ୍ୟାଣ ସାଧନ କରିବ ।

---

## ବାଳକେନ୍ଦ୍ରିକ ଶିକ୍ଷା

ସମୟ ଥିଲା, ଯେତେବେଳେ ଜ୍ଞାନରାଶି ମୁଷ୍ଟିମେୟ ପଣ୍ଡିତଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଏଥିରେ ସେମାନଙ୍କର ଏକାଧିପତ୍ୟ ଥିଲା । ଶିଷ୍ୟମାନେ ଶତ ଶତ କୋଶ ଦୂରରୁ ଆସି ସେମାନଙ୍କର ଆଜ୍ଞାବହ ହୋଇ ଗୁରୁଙ୍କର ଇଚ୍ଛା ହେଲେ ଜ୍ଞାନଗ୍ରହଣ କରୁଥିଲେ । ଗୋଟିଏ ଗୋଟିଏ ବିଦ୍ୟାରେ ଜଣେ ଜଣେ ଅସାଧାରଣ ପାଣ୍ଡିତ୍ୟ ଲାଭ କରି ସେହି ବିଦ୍ୟାର ଠିକା ରଖୁଥିଲେ । ସେମାନଙ୍କର ବିଦ୍ୟାନୁରାଗ ଏବଂ ଐକାନ୍ତିକ ଅନୁରକ୍ତି ତାଙ୍କ ପାଣ୍ଡିତ୍ୟର ଶ୍ରେଷ୍ଠ ନିଦର୍ଶନ ଥିଲା ।

ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହେଉଅଛି ଯେ ଗୁରୁ ଏବଂ ବିଦ୍ୟା ପ୍ରାଚୀନ କାଳର ଶିକ୍ଷାଜଗତରେ ଖୁବ୍ ଉଚ୍ଚ ସ୍ଥାନ ଲାଭ କରିଥିଲେ । ଛାତ୍ର ନିଜର ବ୍ୟକ୍ତିତ୍ୱ ହରାଇ ଗୁରୁଙ୍କର କୃପା ଉପରେ ନିର୍ଭର କରୁଥିଲା । ଗୁରୁ ନିଜର ବିଦ୍ୱତ୍ତା ଯୋଗୁଁ ଛାତ୍ରର କ୍ଷମତା ଏବଂ ଗ୍ରହଣ କରିବା ଶକ୍ତି ଉପରେ ଦୃଷ୍ଟି ନ ରଖି ଶିକ୍ଷା ଦେଉଥିଲେ । ଛାତ୍ର ସବୁବେଳେ ଗୁରୁଙ୍କର କୃପାଭିକ୍ଷୁ ହୋଇ ଗୁରୁ କେତେବେଳେ ପ୍ରସନ୍ନ ହେବେ

ସେହି ମୁହୂର୍ତ୍ତିକୁ ଅନାଇଁ ରହୁଥିଲା । ଫଳରେ ବିଦ୍ୟାଦାତା ନିଜର ବିଦ୍ୟା ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବାକୁ ଲକ୍ଷ୍ୟ କରୁଥିଲେ । କିନ୍ତୁ ବିଦ୍ୟା-ଗ୍ରହୀତା କେତେଦୂର ଗ୍ରହଣ କରି ପାରୁଛି ସେ ପ୍ରତି ଆଦୌ ଦୃଷ୍ଟି ନ ଥିଲା । କୌଣସି ପଦାର୍ଥ କାହାର ଦ୍ୱାରା ଦାନ କରା ହୋଇଛି— ଏଥିରୁ ନିଶ୍ଚିତ କରି ଜଣାଯିବ ଯେ ଉକ୍ତ ପଦାର୍ଥକୁ କେହିହେଲେ ଗ୍ରହଣ କରିଅଛି । ତେଣୁ ଦାନ ଗ୍ରହଣ ଉପରେ ନିର୍ଭର କରେ । ସେହିପରି ଅଧ୍ୟାପନା ଅଧ୍ୟୟନ ଉପରେ ନିର୍ଭର କରେ । ଦାନ, ଗ୍ରହଣ, ଅଧ୍ୟାପନା, ଅଧ୍ୟୟନ—ଏହି ଯୁଗ୍ମ ଶବ୍ଦମାନ ପରସ୍ପର ମୁଖାପେକ୍ଷୀ । ଗୋଟିଏ ଅନ୍ୟଟି ବିନା ତିଷ୍ଠିପାରେ ନାହିଁ । ତେଣୁ ଶିକ୍ଷା ଜଗତରେ ଛାତ୍ର ବିଦ୍ୟା ଗ୍ରହୀତା । ସେ ଅବହେଳିତ ନୁହେଁ । ତାର ମଧ୍ୟ ପ୍ରାଧାନ୍ୟ ଅଛି ।

"ଶିକ୍ଷକ ଛାତ୍ରକୁ ଗଣିତ ପଢ଼ାନ୍ତି ।" ଏହି ବାକ୍ୟରେ 'ଛାତ୍ର' ଏବଂ 'ଗଣିତ' ଏହି ଦୁଇଟି ଶବ୍ଦ 'ପଢ଼ାନ୍ତି' କ୍ରିୟାର କର୍ମ । ପୂର୍ବକାଳରେ ଛାତ୍ରକୁ ଅବହେଳା କରି ଗଣିତକୁ ଉଚ୍ଚ ସ୍ଥାନ ଦିଆ ହେଉଥିଲା । ଛାତ୍ରକୁ ଗୌଣ ଏବଂ ଗଣିତକୁ ମୁଖ୍ୟରୂପେ ଧରି ନିଆ ହୋଇଥିଲା । ଗଣିତ ବିଷୟ, ତାହାର କ୍ରମ ଏବଂ ଗରିମା ଅକ୍ଷୁଣ୍ଣ ରହୁଥିଲା । ଛାତ୍ରକୁ ନାନାଶୃଙ୍ଖଳା, ସାଧନା ଏବଂ ଅଧ୍ୟବସାୟର ମାର୍ଗରେ ଗତି କରିବାକୁ ପଡ଼ୁଥିଲା । ଗଣିତରେ ଇପ୍‌ସିତ ଜ୍ଞାନ ଲାଭ କରିବା— ଏହାହିଁ ଛାତ୍ରର ଏକମାତ୍ର ଲକ୍ଷ୍ୟ ଥିଲା । ଛାତ୍ରର ଗ୍ରହଣ କରିବା ଶକ୍ତି ପ୍ରତି ଦୃଷ୍ଟି ନ ଦେଇ ଶିକ୍ଷା ଦିଆଯାଉଥିଲା । ଫଳରେ ଛାତ୍ରର ଉନ୍ନତି ସର୍ବାଙ୍ଗୀନ ନ ହୋଇ ଏକାନ୍ତମୁଖୀ ହୋଇଥିଲା । ଛାତ୍ରର ବ୍ୟକ୍ତିତ୍ୱ ସେହି ଜ୍ଞାନଲାଭ ପାଇଁ ଲୋପ ପାଇଥିଲା ।

କିନ୍ତୁ ଆଜିକାଲି ବହୁ ଗବେଷଣା ଫଳରେ ଉକ୍ତ ଧାରଣାର ବିଫଳତା ପ୍ରତିପାଦିତ ହେଲାଣି । ଛାତ୍ରର ପୂର୍ଣ୍ଣାଙ୍ଗ ଉନ୍ନତି ଆଜିକାଲି

ଶିକ୍ଷାର ଉଦ୍ଦେଶ୍ୟ । ତାର ବ୍ୟକ୍ତିତ୍ୱର ଅଭିବୃଦ୍ଧି ଏବ ନିଜତ୍ୱର ସ୍ୱାଭାବିକ ବିକାଶ ଅଭିଭାବକଙ୍କର ଲକ୍ଷ୍ୟ ହେଲାଣି । ତେଣୁ ଛାତ୍ରର ଇଚ୍ଛା ଓ ତାହାର ଅଭିରୁଚି ଅନୁଯାୟୀ ଗଣିତ ପ୍ରଭୃତି ବିଷୟମାନଙ୍କୁ ସ୍ଥାପନ କରିବାକୁ ହେବ । ବିଭିନ୍ନ ବିଷୟ-ରୂପକ ସୌରଜଗତରେ ଛାତ୍ର ସୂର୍ଯ୍ୟ । ପାଠ୍ୟ ତାଲିକାସ୍ଥ ବିଷୟମାନ ଛାତ୍ରର ଉନ୍ନତି ପାଇଁ ସ୍ୱିକୃତ । ତେଣୁ ଛାତ୍ରର କେଉଁ ବୟସରେ କେଉଁ ପାଠରୁ କେତେ ପଢ଼ାଇବାକୁ ହେବ ତାହା ମଧ୍ୟ ସ୍ଥିର କରିବାକୁ ହେବ । ତେଣୁ ଗୁରୁଙ୍କର ବିଷୟ ଜାଣିବା ସଙ୍ଗେ ସଙ୍ଗେ ଛାତ୍ରର ମନକୁ ଜାଣିବା ସର୍ବ ପ୍ରଥମ କର୍ତ୍ତବ୍ୟ ।

ଏହି ହେଲା ବାଳକୈନ୍ଦ୍ରିକ ଶିକ୍ଷା । ଆଧୁନିକ ଶିକ୍ଷା-ଧାରାର ଏହା ଏକ ବିଶିଷ୍ଟ ଲକ୍ଷଣ । ବାଳକର ମନ ଅନୁଯାୟୀ ପାଠକୁ ଉପସ୍ଥାପିତ କରିବାକୁ ହେବ । ତେଣୁ ଏହି ଲକ୍ଷଣ ମନୋବିଜ୍ଞାନ ଏବଂ ଶିକ୍ଷାଦାନ ପ୍ରଣାଳୀ ଉପରେ ଅଧିକ ଜୋର ଦେଇଛି । ଏହାଦ୍ୱାରା ପ୍ରତ୍ୟେକ ଶିକ୍ଷକଙ୍କର ଉଦ୍ଦେଶ୍ୟ, କର୍ତ୍ତବ୍ୟ ଏବଂ ଦାୟିତ୍ୱ ସମ୍ପୂର୍ଣ୍ଣ ନିରୂପିତ ହୋଇଅଛି । ଛାତ୍ରର ଉନ୍ନତି ବିଧାନ କରି ସମାଜରେ ନାଗରିକ ସୃଷ୍ଟି କରିବା—ଶିକ୍ଷକଙ୍କର ଲକ୍ଷ୍ୟ । ତେଣୁ ସମାଜ, ଗୋଷ୍ଠୀ, ଅବସ୍ଥା ଏବଂ ବର୍ଣ୍ଣ ନିର୍ବିଶେଷରେ ସକଳ ଛାତ୍ରର ଉନ୍ନତି ସାଧନ—ଶିକ୍ଷକଙ୍କର ମୌଳିକ ହେବା ଉଚିତ ।

ପରିଶେଷରେ ଯେଉଁ ମହାପୁରୁଷ ଛାତ୍ରଜୀବନରେ ମୁକ୍ତି ଆଣି ଦେଇଅଛନ୍ତି, ସେ କିଏ ? ଛାତ୍ରକୁ ବିଷୟର ବନ୍ଧନରୁ ମୁକ୍ତି ଦେଇ ଅଛନ୍ତି, ଛାତ୍ରକୁ ଛାତ୍ରରୂପେ ବଞ୍ଚାଇଛନ୍ତି—ସେ ଫ୍ରାନ୍ସ ଦେଶର ରୁଷୋ । ଏହି ମନୀଷୀ ସର୍ବପ୍ରଥମେ ଛାତ୍ରର ମୁକ୍ତିବୀଜ ବପନ କରିଥିଲେ । ବେତାଘାତ, ଶିକୁଳି ଓ ବନ୍ଧନ ଛାତ୍ରଜୀବନରୁ ନିର୍ବାସିତ ହେଲା । ଆଲୋକ, ସ୍ଫୂର୍ତ୍ତି ଓ ପ୍ରସନ୍ନତା ଛାତ୍ରଜୀବନରେ ଖେଳିଲା ।

ମୌଳିକତା ଫୁଟି ଉଠିଲା । ଛାତ୍ର ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ଜ୍ଞାନ କେବଳ ଗୋଟିଏ ଶ୍ରେଣୀର ଲୋକଙ୍କ ପାଇଁ ଅଭିପ୍ରେତ—ଏହା ଭୁଲ ବୋଲି ସ୍ୱୀକାର କରାଗଲା । ରୁଷୋ ଜଗତକୁ ଶୁଣାଇ ଦେଲେ ଯେ ଶିକ୍ଷିତହେବା ସମସ୍ତଙ୍କର ଜନ୍ମଗତ ଅଧିକାର । ପ୍ରତ୍ୟେକ ଛାତ୍ରର ମୌଳିକତା ଅଛି । ତାହାର ବ୍ୟକ୍ତିତ୍ୱ ବିକଶିତ ହେଲେ ତାହାର ଦାନ ସ୍ୱତନ୍ତ୍ର ହେବ । ତେଣୁ ଛାତ୍ରକୁ ବିଦ୍ୟା ସମକ୍ଷରେ ବଳି ଦେବାକୁ ହେବ ନାହିଁ । ଛାତ୍ରର ମନ ବିଦ୍ୟାଦ୍ୱାରା ଅନୁଶୀଳିତ, ପୁଷ୍ଟ, ବିକଶିତ ଓ ଉନ୍ନତ ହେବ । ଛାତ୍ରର ମନର ସ୍ୱାଭାବିକ ବିକାଶ ହେବ । ଶିକ୍ଷା ଓ ଚର୍ଚ୍ଚା କେବଳ ମାତ୍ର ସାହାଯ୍ୟ କରିବ । ବାଳକେନ୍ଦ୍ରିକ ଶିକ୍ଷା—ବାଳକକୁ କେନ୍ଦ୍ର କରି ତାହାର ମନୋବୃତ୍ତି ଅନୁଯାୟୀ ଶିକ୍ଷା ଦେବା ଯେଉଁ ମହାତ୍ମାଙ୍କର ଅବଦାନ ସେ ରୁଷୋ—ସେ ଆମ୍ଭମାନଙ୍କର ନମସ୍ୟ ।

---

## ବିଦ୍ୟାମନ୍ଦିର

ବିଦ୍ୟା ମନ୍ଦିର—ଏହି ନାମରୁ ଭାବିବା ଉଚିତ ନୁହେଁ ଯେ ଏହା ଗୋଟିଏ ପୂଜାପୀଠ, ଏଥିରେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ କିମ୍ବା ଅନ୍ୟ କୌଣସି ଦେବଦେବୀଙ୍କର ବିଗ୍ରହପୂଜା ~~ପାଇଁ~~ ~~ଆଏ~~ ନାହିଁ । ଏହା ବିଦ୍ୟାଶିକ୍ଷା ଓ ଜ୍ଞାନାର୍ଜ୍ଜନର କ୍ଷେତ୍ର ଅଟେ । ମନ୍ଦିର ଶବ୍ଦ ସହିତ ଏହାର କାର୍ଯ୍ୟର କୌଣସି ସମ୍ପର୍କ ନ ଥାଏ । ଆମ୍ଭେମାନେ ଯେପରି ଆରୋଗ୍ୟ ମନ୍ଦିର, କର୍ମମନ୍ଦିର, ଜ୍ଞାନମନ୍ଦିର, ଉଦ୍ୟୋଗମନ୍ଦିର, ନ୍ୟାୟ-ମନ୍ଦିର ପ୍ରଭୃତି ଶବ୍ଦମାନ ପ୍ରୟୋଗ କରୁ, ବିଦ୍ୟାମନ୍ଦିରର ପ୍ରୟୋଗ ସେହିପରି । ତଥାପି ଧର୍ମପ୍ରବଣ ଭାରତୀୟ ପକ୍ଷରେ ଏହି ବିଦ୍ୟାମନ୍ଦିର ଶବ୍ଦର ପ୍ରୟୋଗ ବେଶ୍ ସମୀଚୀନ । ଏହି

ନାମରେ ଧନ ଓ ପରିଶ୍ରମ ତ୍ୟାଗ କରିବାକୁ ଭାରତୀୟ କୁଣ୍ଠିତ ହୁଏ ନାହିଁ । ମଧ୍ୟପ୍ରଦେଶସ୍ଥ ପାଠଶାଳାମାନ ଏହି ବିଦ୍ୟାମନ୍ଦିର ନାମରେ ଅଭିହିତ ।

ଆମ ଦେଶର ନିରକ୍ଷରତା ବିଷୟ ଚିନ୍ତାକଲେ ମନରେ ଗଭୀର ଦୁଃଖ ଆସେ । ଚିତ୍ତବୃତ୍ତି ସ୍ଥଗିତ ହୁଏ । ଏକ ସମୟରେ ଭୂପୃଷ୍ଠରେ ଯେଉଁ ତମସାଚ୍ଛନ୍ନ ମହାଦେଶ ଥିଲା ବର୍ତ୍ତମାନ ମଧ୍ୟ ଅସ୍ମମାନଙ୍କର ଅବସ୍ଥା ସେହିପରି କହିଲେ ଚଳେ । ଆମର ଅଗଣିତ ନରନାରୀ ଜ୍ଞାନାଲୋକରୁ ବଞ୍ଚିତ । ତେଣୁ ଆମକୁ ଦାରିଦ୍ର୍ୟ, ରୋଗ, ଋଣ ପ୍ରଭୃତିର କଷାଘାତରେ କବଳିତ ହେବାକୁ ପଡୁଛି । ଇଂଲଣ୍ଡ, ଆମେରିକା, ଚିନ, ଯାପାନ, ଜର୍ମାନ ପ୍ରଭୃତି ଶିକ୍ଷିତ ଦେଶର ସାକ୍ଷରତା ସଂଖ୍ୟା ମନେ ପକାଇଲେ ଅମ୍ଭେମାନେ କେଉଁଠାରେ ? ସେ ଦେଶର ହାରାହାରି ନିରକ୍ଷରତା ସଂଖ୍ୟା ପ୍ରାୟ ·୦୫୩; ଅଥଚ ଅସ୍ମମାନଙ୍କ ଦେଶରେ ସାକ୍ଷରତା ସଂଖ୍ୟା ଅତି କମ୍ କହିଲେ ଅତ୍ୟୁକ୍ତି ହେବ ନାହିଁ । ମଧ୍ୟପ୍ରଦେଶର ସରକାର ଏହି ଦୁର୍ଦ୍ଦଶାବଲୋକନ କରି ଏକ ନିର୍ଦ୍ଦିଷ୍ଟ ସମୟରେ ଏବଂ ଗୋଟାଏ ସୁଚିନ୍ତିତ, ଅବୈତନିକ ଓ ବାଧ୍ୟତାମୂଳକ ଗଣଶିକ୍ଷା ପଦ୍ଧତିଦ୍ୱାରା ସାକ୍ଷରତା ବୃଦ୍ଧି କରାଇବା ପାଇଁ ଏକ ଯୋଜନା ପ୍ରସ୍ତୁତ କଲେ । ଦେଖାଗଲା ଯେ ୧୮୩୭ ମସିହାରେ ଶତକଡ଼ା ୫·୮ ଜଣ ସାକ୍ଷର ଥିଲେ । ୧୯୩୧ ମସିହାରେ ଏହି ସଂଖ୍ୟା ଶତକଡ଼ା ୮ ହେଲା । ଏହି ଏକ ଶତାବ୍ଦୀ ମଧ୍ୟରେ ସାକ୍ଷରତା ସଂଖ୍ୟା ଶତକଡ଼ା ୨·୨ ବଢ଼ିଛି । ଶେଷ ୩୦ ବର୍ଷ ମଧ୍ୟରେ ଏହା ଶତକଡ଼ା ୧ ବଢ଼ିଛି । ଦେଶରେ ଜାତୀୟ, ସାମାଜିକ, ନୈତିକ ଓ ମାନସିକ ଜାଗରଣ ଆଣାଇବା ଲାଗି ଏହି ଅବସ୍ଥାକୁ ପ୍ରଶ୍ରୟ ଦେବା ଅନୁଚିତ । କାଳବିଳମ୍ବ ନ କରି ଏହାର ଉଚ୍ଛେଦସାଧନ କରିବା ସର୍ବଥା ବାଞ୍ଛନୀୟ । ତେଣୁ

ସମସ୍ତ ଲୋକଙ୍କୁ ଶିକ୍ଷିତ କରାଇବା ଉଦ୍ଦେଶ୍ୟରେ ୧୯୩୭ ମସିହାରେ ମଧ୍ୟପ୍ରଦେଶ ସରକାର ଏହି ବିଦ୍ୟାମନ୍ଦିର ଯୋଜନା ଗ୍ରହଣ କଲେ । ଏହାର ପ୍ରଧାନ ବିଷୟମାନ ନିମ୍ନରେ ଦିଆଗଲା:—

( ୧ ) କୌଣସି ସ୍ଥାନଠାରୁ ଏକ ମାଇଲ ବ୍ୟାସାର୍ଦ୍ଧରେ ଯେତେ ଗ୍ରାମ ଅଛି ସେମାନଙ୍କ ପାଇଁ ଗୋଟିଏ ବିଦ୍ୟାମନ୍ଦିର ସ୍ଥାପିତ ହେବ । ସେହି ଗ୍ରାମମାନଙ୍କରୁ ବିଦ୍ୟାଳୟରେ ଯୋଗ ଦେବା ପିଲା ଅନ୍ତତଃ ୪୦ ଜଣ ହେବା ଉଚିତ । ଆଜିକାଲି ଯାତାୟାତର ଅସୁବିଧା ହେତୁରୁ ଅନେକ ଗ୍ରାମରୁ ବିଦ୍ୟାଳୟକୁ ପିଲା ଯାଇ ପାରୁ ନାହାନ୍ତି । ଅନେକ ଗ୍ରାମରେ ମଧ୍ୟ ବିଦ୍ୟାଳୟ ଆଦୌ ନାହିଁ । ଏଣୁ ମଧ୍ୟପ୍ରଦେଶରେ ବିଦ୍ୟାଳୟର ଅବସ୍ଥିତି ସମ୍ବନ୍ଧରେ ଯେଉଁ ବ୍ୟବସ୍ଥା କରାଗଲା ତଦ୍ଦ୍ୱାରା ପ୍ରତ୍ୟେକ ଗ୍ରାମର ବାଳକବାଳିକାମାନେ ବିଦ୍ୟାର୍ଜ୍ଜନ କରିବାର ସୁବିଧା ପାଇବେ ।

(୨) ବିଦ୍ୟାମନ୍ଦିର ଲୋକଙ୍କର ବିଦ୍ୟାଳୟ ହୋଇ ରହିବ । ସ୍ଥାନୀୟ ଅବସ୍ଥା ଦୃଷ୍ଟିରେ ବିଦ୍ୟାଳୟର ପାଠ୍ୟକ୍ରମ ସ୍ଥିରୀକୃତ ହେବ । ପିଲାମାନେ ଗ୍ରାମ୍ୟଜୀବନ ଯାପନ କରିବା ପାଇଁ ତାଲିମ କରା ହେବେ । ପିଲାମାନେ ଗ୍ରାମ୍ୟ ସମସ୍ୟା ଛଡ଼ା ସହର, ଜିଲ୍ଲା ଏବଂ ପ୍ରଦେଶର ସମସ୍ୟା ବିଷୟ ଆଲୋଚନା କରିବେ । ତାହାହେଲେ ସେମାନଙ୍କର ଜାତୀୟ ମନୋବୃତ୍ତି ରହିବ । ବିଦ୍ୟାମନ୍ଦିରରେ ଶିକ୍ଷକ, ଅଭିଭାବକ ଏବଂ ବାଳକବାଳିକାଙ୍କ ସମ୍ମିଳିତ ଉଦ୍ୟମରେ ଗ୍ରାମୋନ୍ନତି ବିଷୟ ଆଲୋଚିତ ହେବ । ତାହାହେଲେ ଗ୍ରାମ୍ୟ ଜୀବନ ସହିତ ସମ୍ପର୍କ ରହିବ । ସାମାଜିକ, ଜାତୀୟ ଏବଂ ଶିକ୍ଷାସମ୍ବନ୍ଧୀୟ ସମସ୍ୟାର ସମାଧାନ କରା ହେବ । ମୋଟ ଉପରେ ବିଦ୍ୟାମନ୍ଦିରରୁ ଜ୍ଞାନାଲୋକ ବିଚ୍ଛୁରିତ ହୋଇ ଗ୍ରାମ୍ୟ ଜୀବନକୁ ସମୃଦ୍ଧ କରାଇବ ।

(୩) ଜମିଦାର କିମ୍ବା ଅନ୍ୟ କେହି ଧନୀ ବଦାନ୍ୟବ୍ୟକ୍ତି ବିଦ୍ୟା-ମନ୍ଦିରର ଖର୍ଚ୍ଚ ପାଇଁ କେତେକ ଭୂମିଦାନ କରିବେ । ଜମିପରିମାଣ ଏପରି ହେବା ଉଚିତ ଯଦ୍ଦ୍ୱାରା ସେଥିରୁ ବାର୍ଷିକ ଟ୨୦୦୯ ଆୟ ହୋଇ ପାରିବ । ବିଦ୍ୟାମନ୍ଦିରର ଖର୍ଚ୍ଚ ପ୍ରଧାନତଃ ଏହି ଭୂମିରୁ ଉଠିବ । ଗ୍ରାମରେ ପର୍ବପର୍ବାଣୀମାନଙ୍କରେ ଯେଉଁ ଦାନ କରାହୁଏ ସେ ଟଙ୍କା ମଧ୍ୟ ଏ ଆଡ଼କୁ ଅଣାଯାଇ ପାରେ । କୌଣସି ଲୋକ ଗ୍ରାମ ପଞ୍ଚାୟତ ଦ୍ୱାରା ଦଣ୍ଡିତ ହେଲେ ସେହି ଜୋରିମାନା ମଧ୍ୟ ବିଦ୍ୟାମନ୍ଦିର ପାଇଁ ଖର୍ଚ୍ଚ କରାଯାଇ ପାରେ । ଏହି ଭୂମିଦାନ ପ୍ରଥା ସର୍ବ ପ୍ରଥମେ ସ୍ୱେଚ୍ଛା-ପ୍ରଣୋଦିତ ହୋଇ ରହିବ । ମାତ୍ର ଧନୀକ ବ୍ୟକ୍ତିମାନଙ୍କୁ ଏ ବିଷୟରେ ଉତ୍ସାହିତ କରାଯିବ । ଦରକାର ପଡ଼ିଲେ ସରକାର ଏହାକୁ ବାଧ୍ୟତା-ମୂଳକ କରିଦେଇପାରନ୍ତି । କେହି ଭୂମିଦାନ କରିବାକୁ ଚାହିଁଲେ, ସରକାରଙ୍କ କୃଷିବିଭାଗ ପ୍ରଥମେ ପରୀକ୍ଷା କରି ଦେଖିବେ ଯେ ସେତିକି ଜମିରୁ ଖର୍ଚ୍ଚ ପାଇଁ ବାର୍ଷିକ ଟ୨୦୦୯ ଆୟ ହୋଇପାରେ କି ନାହିଁ । ତାହା ନ ହେଲେ ବିଦ୍ୟାମନ୍ଦିର ଆରମ୍ଭ କରିବା ପାଇଁ ସେମାନେ ସରକାରଙ୍କ ନିକଟରେ ସୁପାରିଶ କରିବେ ନାହିଁ ଓ ସରକାର ମଧ୍ୟ ଅନୁମତି ଦେବେ ନାହିଁ ।

(୪) ବିଦ୍ୟା-ମନ୍ଦିରରେ ବାଳକବାଳିକା ଏକତ୍ର ପଢ଼ିପାରିବେ । ଏହା ସାଧାରଣତଃ ଜଣେ ଶିକ୍ଷକଙ୍କ ଦ୍ୱାରା ପରିଚାଳିତ ହୁଏ । ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଅତି ବେଶୀ ହେଲେ ୩୦ ଜଣ ପିଲା ପଢ଼ି ପାରିବେ । ଛାତ୍ରସଂଖ୍ୟା ୪୦ରୁ ଅଧିକ ହୋଇ ୮୦ ପର୍ଯ୍ୟନ୍ତ ହେଲେ ବିଦ୍ୟାଳୟ ଦୁଇଶିଫ୍ଟ ହେବ ଅଥବା ମନିଟରଙ୍କ ଦ୍ୱାରା କାମ ଚଳିବ । ଶିକ୍ଷକ ପ୍ରଥମ ପାଞ୍ଚ ବର୍ଷ ଅସ୍ଥାୟୀ ଭାବରେ କାମ କରିବେ । ତାଙ୍କ କାର୍ଯ୍ୟ ସନ୍ତୋଷଜନକ ହେଲେ ତାଙ୍କୁ ମୁକରର କରାଯିବ । ସାଧାରଣତଃ ଶିକ୍ଷକଙ୍କୁ ଅନ୍ୟୁନ ମାସିକ ବେତନ ଟ ୧୫୯ ଦିଆଯିବ ।

କୃଷିରୁ ଆୟ ଅଧିକ ହେଲେ ଏହି ବେତନ ବଢାଇ ଦିଆଯିବ । ଶିକ୍ଷକ ସ୍ଥାୟୀ ହେଲେ ତାଙ୍କୁ ଟ ୫୦୦୯ ପାଇଁ ଜୀବନବୀମା କରିବାକୁ ହେବ । ଶିକ୍ଷକଙ୍କର ଭବିଷ୍ୟତ ପାଇଁ ଯଥୋଚିତ ବୃତ୍ତି ଦିଆଯିବ ।

(୫) ବିଦ୍ୟାମନ୍ଦିରର ପ୍ରାଥମିକ ପାଠ୍ୟକ୍ରମ ଚୁରିବର୍ଷ ବ୍ୟାପୀ ହେବ । ପରିବେଷ୍ଟନୀ ସହିତ ପାଠ୍ୟ ବିଷୟର ସମ୍ପର୍କ ରହିବ । କୃଷି ଓ ଶିଳ୍ପ ସମ୍ବନ୍ଧୀୟ ପ୍ରଶ୍ନର ଆଲୋଚନା କରାଯିବ । ଲୁଗାବୁଣା, ସୂତାକଟା, ଧାଡ଼ିଭଡ଼ବଲା, କଣ୍ଢେଇ ତିଆରି ପ୍ରଭୃତି ହାତକାମ କରା ହେବ ।

ସ୍ଥୂଳତଃ ବିଦ୍ୟାମନ୍ଦିର ଗ୍ରାମର ଧନିକ, ବଣିକ ଏବଂ ଜମିଦାରଙ୍କ ଉପରେ ନିର୍ଭର କରିବ । ଗ୍ରାମରେ ହାନିଲାଭ କିମ୍ବା ଦୋଷାଦୋଷରେ ଯେଉଁ ଆୟ ହେବ ତାହା ମଧ୍ଯ ବିଦ୍ୟାମନ୍ଦିରରେ ବ୍ୟୟିତ ହେବ । ଗ୍ରାମର ସାମାଜିକ ଉନ୍ନତି କରାଇବା ଶିକ୍ଷାର ଲକ୍ଷ୍ୟ । ସେଥିପାଇଁ ପ୍ରାଚୀନ ଭାରତରେ ହିନ୍ଦୁ ନରପତିମାନେ ବିଦ୍ୟାନୁରାଗୀ ଏବଂ ବିଦ୍ୟୋତ୍ସାହୀ ଥିଲେ । ସେମାନେ ଶିକ୍ଷାର ପ୍ରସାର ପାଇଁ ଲକ୍ଷ ଲକ୍ଷ ଟଙ୍କା ଅକାତରରେ ରାଜକୋଷରୁ ବିତରଣ କରୁଥିଲେ । ସେମାନେ ବୁଝୁଥିଲେ ଯେ ପ୍ରଜାମାନେ ଶିକ୍ଷିତ ହେଲେ ଦେଶରୁ ଦସ୍ୟୁଭୟ, ବ୍ୟଭିଚାର, କୁସଂସ୍କାର ଇତ୍ୟାଦି ଲୋପ ପାଉଥିଲା ଏବଂ ଦେଶରେ ଶାନ୍ତି ବିରାଜୁଥିଲା । ତେଣୁ ସେମାନେ ପ୍ରଜାଙ୍କର ସମୂହ କଲ୍ୟାଣ ନିମିତ୍ତ ଶିକ୍ଷାପ୍ରସାର ପାଇଁ ଅର୍ଥବ୍ୟୟ କରୁଥିଲେ । ନାଲନ୍ଦ ଏବଂ ତକ୍ଷଶୀଳା ବହୁ ହିନ୍ଦୁ ରାଜାମହାରାଜାଙ୍କର ବଦାନ୍ୟତା ଓ ପୃଷ୍ଠପୋଷକତା ଉପରେ ନିର୍ଭର କରି ପ୍ରାଚ୍ୟ ଭୂଖଣ୍ଡରେ ଆଦର୍ଶ ବିଦ୍ୟାପୀଠ ରୂପେ ଖ୍ୟାତି ଲାଭ କରିଥିଲା । ତେଣୁ ଆଜିକାଲିକାର ଧନୀ ବ୍ୟକ୍ତିମାନେ ବିଳାସବ୍ୟସନରେ ଅର୍ଥବ୍ୟୟ ନ କରି ଦେଶ ଓ ଦଶର କଲ୍ୟାଣ ପାଇଁ ବ୍ରତୀ ହେବା ଉଚିତ । ଶିକ୍ଷାଦ୍ୱାରା ମାନବଜଗତର ପ୍ରଭୂତ କଲ୍ୟାଣ ସାଧିତ ହେବ । ସେଥିପାଇଁ ବଦାନ୍ୟବ୍ୟକ୍ତିଙ୍କର

ବୃତ୍ତି ରହିବା ଉଚିତ । ଅଧିକନ୍ତୁ ଶିକ୍ଷା ଏକ ସାମାଜିକ ସମସ୍ୟା । ତେଣୁ ଏ ଦିଗରେ ସମାଜର ଚିନ୍ତା ଓ ଭାବନା ରହିବା ଉଚିତ । ବିଦ୍ୟାମନ୍ଦିର ଯୋଜନାର ବିଶେଷତ୍ୱ ଏହି ଯେ ଏଥିରେ ଜନସାଧାରଣ ତଥା ଧନିକ ବ୍ୟକ୍ତି ସମସ୍ତେ ସମଭାବରେ ଭାଗନେଇ ପାରିବେ । ସମସ୍ତେ ବିଦ୍ୟାମନ୍ଦିରର ଉନ୍ନତିକଳ୍ପେ ମନ ପ୍ରାଣ ଦେଇ ଲାଗିପଡ଼ିବେ । ସରକାର କେବଳ ପରିଚାଳକ ହୋଇ ରହିବେ । ଏହାହିଁ ପ୍ରକୃତରେ ଆଦର୍ଶ ଅନୁଷ୍ଠାନ ହେବ । ଶିକ୍ଷା ଯେଉଁମାନଙ୍କର କଲ୍ୟାଣ ପାଇଁ ଅଭିପ୍ରେତ, ସେମାନେ ଏଥିରେ ସହଯୋଗ କରିବେ ।

---

## ନାଳନ୍ଦା

ଲକ୍ଷ୍ମୀ ଓ ସରସ୍ୱତୀଙ୍କ ମଧ୍ୟରେ ସପତ୍ନୀଭାବ ଥିବାରୁ ଦୁହେଁ କୌଣସି ଜଣଙ୍କ ଉପରେ ସୁପ୍ରସନ୍ନା ହୁଅନ୍ତି ନାହିଁ, ଅଥିବା ଭାରତୀଭକ୍ତଙ୍କର ଦାରିଦ୍ର୍ୟ ସଦା ସହଚର ବୋଲି ସମସ୍ତେ କହନ୍ତି । ଅବଶ୍ୟ ସାଧାରଣତଃ ଏହା ଦେଖାଯାଏ ଯେ ପଣ୍ଡିତମାନେ ସର୍ବଦା ଅଭାବଗ୍ରସ୍ତ । ଏହାହେଲେ ସୁଦ୍ଧା ମନୁଷ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ଦୁହିଁଙ୍କର ଆନୁକୂଲ୍ୟ ଆବଶ୍ୟକ । ଦୁହେଁ ପରସ୍ପର ବିରୋଧଭାବାତ୍ମକ ନ ହୋଇ ବରଂ ସାହାଯ୍ୟକାରୀ । ପାଣ୍ଡିତ୍ୟ-ଲାଭରେ ଅର୍ଥବ୍ୟୟ ଯେପରି ଆବଶ୍ୟକ, ଧନାର୍ଜ୍ଜନରେ ବିଜ୍ଞତା ଆଚରଣ ସେହିପରି ପ୍ରୟୋଜନୀୟ । ଧନର ଅଭାବରେ ପ୍ରତିଭା ବିକଶିତ ହୋଇ ନ ପାରେ, ପକ୍ଷାନ୍ତରରେ ବିପୁଳ ସମ୍ପତ୍ତିର ରକ୍ଷା କେବଳ ମତିମାନ୍ ଲୋକଦ୍ୱାରା ସମ୍ଭବ ହୋଇପାରେ । ଉଦାହରଣ ସ୍ୱରୂପ ସମୟ ଥିଲା, ଯେତେବେଳେ ଭାରତବର୍ଷ ଧନଧାନ୍ୟରେ ପରିପୂର୍ଣ୍ଣ ଥିଲା । ଭାରତୀୟମାନେ ପ୍ରାଚୁର୍ଯ୍ୟରେ ଭାସୁଥିଲେ । ତେଣୁ ସେତେବେଳେ ଲୋକେ ଜ୍ଞାନଗବେଷଣାରେ

ବିଶେଷ ଭାବରେ ବ୍ୟାପୃତ ରହୁଥିଲେ । ଭାରତୀୟ ଶିକ୍ଷାକେନ୍ଦ୍ରମାନଙ୍କର ପ୍ରସିଦ୍ଧି ସେ ସମୟରେ ଏତେ ବେଶୀ ଥିଲା ଯେ ସୁଦୂର ଚୀନ ପ୍ରଭୃତି ଦେଶମାନଙ୍କରୁ ପରିବ୍ରାଜକ ଓ ଶିଷ୍ୟମାନେ ଅକୃଷ୍ଟ ହୋଇ ଆସୁଥିଲେ । ଏହି ଶିକ୍ଷାକେନ୍ଦ୍ରମାନଙ୍କ ମଧ୍ୟରେ ନାଳନ୍ଦା ଓ ତକ୍ଷଶୀଳା ପ୍ରଧାନ ଅଟେ ।

ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର କଥା । ବିହାର ପ୍ରଦେଶର ରାଜଧାନୀ ପାଟଳୀପୁତ୍ର ବା ଆଧୁନିକ ପାଟନାଠାରୁ ପ୍ରାୟ ୫୦ ମାଇଲ ଦକ୍ଷିଣ-ପୂର୍ବରେ ନାଳନ୍ଦା ଅବସ୍ଥିତ । ଏହି ପ୍ରାଚୀନ ବିଶ୍ୱବିଦ୍ୟାଳୟଟି ସେ ସମୟରେ ପୃଥିବୀର ଏକ ସର୍ବପ୍ରଧାନ ବିଦ୍ୟାପୀଠ ଥିଲା । ଜ୍ଞାନପିପାସୁ ଭାରତୀୟ ମନୀଷୀଗଣ ନିଜର ସର୍ବସ୍ୱ ତ୍ୟାଗକରି ପୃଥିବୀର ହିତ ଉଦ୍ଦେଶ୍ୟରେ ଏଠାରେ ବ୍ରତୀ ହେଉଥିଲେ । ତ୍ୟାଗ ଭାରତୀୟ ଜୀବନର ଅନ୍ୟତମ ବିଶେଷତ୍ୱ । ରାଜକୁମାର ବୁଦ୍ଧଦେବ ରାଜପ୍ରାସାଦର ବିଳାସ ବ୍ୟସନ ତ୍ୟାଗକରି ମୁକ୍ତିଲାଭର ପନ୍ଥାନୁସନ୍ଧାନ କରିବା ପାଇଁ ବାହାରି ପଡ଼ିଥିଲେ । ତାଙ୍କ ପ୍ରବର୍ତ୍ତିତ ବୌଦ୍ଧଧର୍ମ ଯେତେବେଳେ ଉନ୍ନତ ହୋଇଥିଲା । ତତ୍କାଳୀନ ରାଜାମହାରାଜା ପ୍ରଜାକୁଳମଙ୍ଗଳ ଉଦ୍ଦେଶ୍ୟରେ ରାଜକୋଷରୁ ଅର୍ଥ ପ୍ରଚୁର ପରିମାଣରେ ଖର୍ଚ୍ଚ କରୁଥିଲେ । ସେମାନେ ସର୍ବଜନ ଆଦୃତ ବୌଦ୍ଧଧର୍ମର ପୃଷ୍ଠପୋଷକତା କରୁଥିଲେ । ଶକ୍ରାଦିତ୍ୟ ନାମକ ଜନୈକ ରାଜା ବୌଦ୍ଧ ଧର୍ମର ପ୍ରଚାର ପାଇଁ ଗୋଟାଏ ବୌଦ୍ଧମଠର ପ୍ରତିଷ୍ଠା ନାଳନ୍ଦାଠାରେ କରିଥିଲେ । ସେଠାରେ ଧର୍ମାନୁଶୀଳନ ଓ ଜ୍ଞାନଚର୍ଚ୍ଚା କରାହେଉ-ଥିଲା । କ୍ରମେ ଶକ୍ରାଦିତ୍ୟଙ୍କ ପରବର୍ତ୍ତୀ ରାଜାଙ୍କଠାରୁ ବଦାନ୍ୟତାଲାଭ କରି ଉକ୍ତ ମଠର ଶ୍ରୀବୃଦ୍ଧି ସାଧିତ ହେଲା ଏବଂ ତାହା କ୍ରମେ ଗୋଟିଏ ବିଶ୍ୱବିଦ୍ୟାଳୟରେ ପରିଣତ ହେଲା । ପ୍ରାୟ ଦୁଇଶତ ଗ୍ରାମରୁ ଅଦାୟ ହେଉଥିବା ଅର୍ଥ ଏଥିରେ ଖର୍ଚ୍ଚ ହେଉଥିଲା । ଅବଶ୍ୟ ଭାରତର ରାଜ-

ମହାରାଜାଙ୍କର ଏ ପ୍ରକାର ଅଜସ୍ର ଦାନ ଧର୍ମ, ସାହିତ୍ୟ ଓ ଶିକ୍ଷାର ପୁଷ୍ଟି ସାଧନ କରୁଥିଲା ।

ବୌଦ୍ଧ ଧର୍ମ ଛଡ଼ା ସାହିତ୍ୟ, ଚିକିତ୍ସା, ଦର୍ଶନ, ଶାସ୍ତ୍ରମାନ ଅଲୋଚିତ ହେଉଥିଲା । ଅଧ୍ୟାପକମାନଙ୍କର ପାଣ୍ଡିତ୍ୟ ସମଗ୍ର ପ୍ରାଚ୍ୟଭୂଖଣ୍ଡରେ ଖ୍ୟାତି ଲାଭ କରିଥିଲା । ଶିକ୍ଷାର୍ଥୀମାନେ ପାଣ୍ଡିତ୍ୟଦ୍ୱାରା ଆକୃଷ୍ଟ ହୋଇ ନାନା ସ୍ଥାନରୁ ଆସୁଥିଲେ । ଶିଷ୍ୟମାନେ ସ୍ୱ ସ୍ୱ ଅଧ୍ୟାପକଙ୍କ ଗଭୀର ଜ୍ଞାନ ଓ ବ୍ୟକ୍ତିତ୍ୱ ପାଇଁ ଗର୍ବ ଅନୁଭବ କରୁଥିଲେ । ପ୍ରସିଦ୍ଧ ଚିନ୍ ପରିବ୍ରାଜକ ହୁଏନ୍‌ସାଂ ଏହି ଅଧ୍ୟାପକମାନଙ୍କର ଧର୍ମନିଷ୍ଠା, ଲୋକବନ୍ଧୁ ଓ ଜ୍ଞାନଗରିମାଦ୍ୱାରା ଆକୃଷ୍ଟ ହୋଇ ଏଠାରେ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ନାଗାର୍ଜୁନ ଓ ଧର୍ମପାଳ ପ୍ରଭୃତି ଅଧ୍ୟାପକଙ୍କର ନାମ ଉଲ୍ଲେଖଯୋଗ୍ୟ ।

ସେ ସମୟରେ ରାସ୍ତାଘାଟ ଖୁବ୍ ବିପଦସଙ୍କୁଳ ଥିଲା । ଆଜିକାଲିକାର ସମୁନ୍ନତ ଯାନବାହନ ସେ ସମୟରେ ନ ଥିଲା । ଯାତାୟାତ ବହୁ ସମୟସାପେକ୍ଷ ଏବଂ ଶ୍ରମସାଧ୍ୟ ଥିଲା । ତଥାପି ଜ୍ଞାନ-ପିପାସୁ ଶିଷ୍ୟବୃନ୍ଦ ଶତ ଶତ କୋଶ ଦୂରରୁ ଆସୁଥିଲେ । ଯୋଗ୍ୟତା ଦୃଷ୍ଟିରେ ସେମାନେ ଗୃହୀତ ହେଉଥିଲେ । କେତେକ ମଧ୍ୟ ପ୍ରବେଶ ପରୀକ୍ଷାରେ ଅଧ୍ୟାପକଙ୍କଠାରୁ ଜ୍ଞାନଗ୍ରହଣ କରିବାକୁ ଅଯୋଗ୍ୟ ବୋଲି ଉତ୍ତୀର୍ଣ୍ଣ ନ ହେବାରୁ ନିରାଶ ହୋଇ ପ୍ରତ୍ୟାବର୍ତ୍ତନ କରୁଥିଲେ । ଶିଷ୍ୟମାନେ ସ୍ୱାଧୀନବାୟୁମଣ୍ଡଳରେ ପରସ୍ପର ଭ୍ରାତୃଭାବରେ ପ୍ରଣୋଦିତ ହୋଇ ଅଧ୍ୟୟନରେ ରତ ହେଉଥିଲେ । ସତ୍ୟ-ଅନୁସନ୍ଧାନ କରିବା ସମସ୍ତଙ୍କର ଲକ୍ଷ୍ୟ ଥିଲା । ସେମାନେ ଯେ କୌଣସି ପ୍ରକାରେ କେବଳ ଉତ୍ତୀର୍ଣ୍ଣ ହେବା ମନୋବୃତ୍ତିଦ୍ୱାରା ପରିଚାଳିତ ହେଉ ନ ଥିଲେ । କାରଣ ଜ୍ଞାନାର୍ଜନ ସେମାନଙ୍କର ପ୍ରକୃତ ଲକ୍ଷ୍ୟ ଥିଲା । ସେମାନେ ମଧ୍ୟ କୃତକାର୍ଯ୍ୟ ହୋଇ-ଲବ୍ଧଜ୍ଞାନକୁ ଉଦରପୋଷଣ ଇତ୍ୟାଦି

ସଙ୍କୀର୍ଣ୍ଣ ସ୍ୱାର୍ଥସିଦ୍ଧି ପାଇଁ ବ୍ୟବହାର କରୁ ନ ଥିଲେ । ସେମାନେ ଦେଶ ବିଦେଶ ଭ୍ରମଣ କରି ନିଜ ନିଜର ଅଧ୍ୟାପକଙ୍କ ମହିମା ପ୍ରଚାର କରିବା ସଙ୍ଗେ ସଙ୍ଗେ ଲୋକହିତକର କାର୍ଯ୍ୟରେ ନିଯୁକ୍ତ ହେଉଥିଲେ ।

ବିଶ୍ୱବିଦ୍ୟାଳୟର ଗୋଟିଏ ବିରାଟ ପୁସ୍ତକାଗାର ଥିଲା । ସେଥିପାଇଁ ତିନିଗୋଟି ପ୍ରକାଣ୍ଡ ପ୍ରକୋଷ୍ଠ ଛାଡ଼ିଦିଆ ହୋଇଥିଲା । ଏହି ପୁସ୍ତକାଗାର ନାଳନ୍ଦାର ଏକ ବିଶେଷତ୍ୱ । ସେ ସମୟରେ ପୁସ୍ତକମାନ ଏତେ ସହଜଲବ୍ଧ ନ ଥିଲା ଏବଂ ସେଗୁଡ଼ିକ ଏକରକମ ଦୁର୍ମୂଲ୍ୟ ହୋଇଥିଲା । ତେଣୁ ଏହି ପୋଥିମାନ ଅନ୍ୟନ୍ତ ବିରଳ ବୋଲି କହିଲେ ଚଳେ । ସମୟ କ୍ରମେ ଆକ୍ରମଣକାରୀମାନେ ଏହି ପୁସ୍ତକାଗାରକୁ ନଷ୍ଟ କରିଦେଲେ ।

ନାଳନ୍ଦାର ସେହି ଆଦର୍ଶ ଓ ଗୌରବ ବର୍ତ୍ତମାନ ନାହିଁ । କାଳର କବଳଗର୍ଭରେ ସେସବୁ ବିଲୀନ ହେଲାଣି । ବୌଦ୍ଧଧର୍ମର ପତନ ସଙ୍ଗେ ସଙ୍ଗେ ତକ୍ଷଶିଳା, ନାଳନ୍ଦା ପ୍ରଭୃତି ଯେଉଁ ଭାରତୀଭବନର ଉତ୍ଥାନ ହୋଇଥିଲା ସେ ସବୁର ମଧ୍ୟ ପତନ ହେଲା । ବର୍ତ୍ତମାନ ଏସବୁ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ଚିନ୍ତାର ବସ୍ତୁ ହୋଇଅଛି । ଭାରତର ଏହି ଅତୀତ ଗୌରବ ବିଷୟ ଚିନ୍ତା କଲେ ହୃତପଟରେ କ୍ଷୋଭ ଏବଂ ଅନୁତାପର ଅଗ୍ନି ସ୍ୱତଃ ଜାଗ୍ରତ ହୁଏ । କିନ୍ତୁ ଗର୍ବର କଥା ଏହି ଯେ ଭାରତର ସେହି ଠେକ ସାହିତ୍ୟ, ଦର୍ଶନ ଓ ଧର୍ମକ୍ଷେତ୍ରରେ ସେପରି ଅକ୍ଷୁଣ୍ଣ ରହିଛି । ବିବେକାନନ୍ଦ କେବଳ ପ୍ରାଚ୍ୟ ଜଗତରେ କାହିଁକି ପାଶ୍ଚାତ୍ୟଜଗତରେ ମଧ୍ୟ ମୈତ୍ରୀ ଓ ମହାନୁଭାବୁକତାର ପ୍ରତୀକ ଥିଲେ । ବର୍ତ୍ତମାନ ମଧ୍ୟ ସେ ସ୍ଥାନ ପୂରଣ କରିବା ପାଇଁ ଅଛନ୍ତି ମହାତ୍ମା ଗାନ୍ଧୀ, ସାର୍‌ସର୍ବପଲ୍ଲୀ ରାଧାକୃଷ୍ଣ, ସାର୍ ସି. ଭି. ରମନ ଇତ୍ୟାଦି । ଭାରତ ବିଶ୍ୱଭାବରେ ସଦା ଉଦ୍‌ବୁଦ୍ଧ ଓ ବିଶ୍ୱର ସମୂହକଲ୍ୟାଣ ସାଧନରେ ଭାରତ କେବେ ପଛାଇ ନାହିଁ ।

---

# ଓ୍ୱାର୍ଦ୍ଧା ଶିକ୍ଷା-ଯୋଜନା

**ଓ୍ୱାର୍ଦ୍ଧା**—ଏହା ଗୋଟିଏ ଭାରତୀୟ ଗ୍ରାମ। ଏହା ମଧ୍ୟପ୍ରଦେଶରେ ଅବସ୍ଥିତ। ଏହା ବର୍ତ୍ତମାନ ସର୍ବଜନ ପରିଚିତ, କାରଣ ଯୋଗଜନ୍ମା ମହାତ୍ମା ଗାନ୍ଧିଙ୍କର ଏହା ସାଧନା ପୀଠ। ଏଠାରେ ଗାନ୍ଧିଜୀଙ୍କର ନେତୃତ୍ୱରେ ଭାରତ ପାଇଁ ଗୋଟାଏ ଶିକ୍ଷାଯୋଜନା ପ୍ରସ୍ତୁତ ହୋଇଥିଲା। ଏହି ଯୋଜନାକୁ ଭାରତୀୟ ଜାତୀୟ ଯୋଜନା କରିବା ପାଇଁ ମହାତ୍ମାଜୀଙ୍କର ପରିକଳ୍ପନା ଅଟେ। ପ୍ରଚଳିତ ଶିକ୍ଷାପଦ୍ଧତିର ବ୍ୟର୍ଥତା ଉପଲବ୍ଧିରୁ ଏହି ପରିକଳ୍ପନାର ସୃଷ୍ଟି। ଗାନ୍ଧିଜୀ ସ୍ପଷ୍ଟ ଅନୁଭବ କଲେ ଯେ ଆଧୁନିକ ଶିକ୍ଷା ପ୍ରାଣହୀନ। ଏହାର ଜାତୀୟ ଜୀବନ ଓ ଜାତୀୟ ଆଦର୍ଶ ସହିତ କୌଣସି ସମ୍ପର୍କ ନାହିଁ। ଏହି ଶିକ୍ଷା ତରୁଣ ଭାରତୀୟଙ୍କୁ ଭାରତ ପାଇଁ ଗଠନ କରୁ ନାହିଁ। ଶିକ୍ଷାରେ ଏହି ଅସାମାଜିକତା ଅନୁଭବ କରି ଶିକ୍ଷାଜଗତର ଚିନ୍ତାଧାରା ସହିତ ସମନ୍ୱୟ ରଖି ଏକ ନୂତନ ଜାତୀୟ ଯୋଜନା ପ୍ରସ୍ତୁତ କଲେ। ଗାନ୍ଧିଜୀଙ୍କର ନେତୃତ୍ୱରେ ଏବଂ ପରିଚାଳନାରେ ଦିଲ୍ଲୀ ଜାମିଆ ମିଲିଆ-ଇସ୍‌ଲାମିଆ କଲେଜର ଅଧ୍ୟକ୍ଷ ଡାକ୍ତର ଜାକିର୍ ହୋସେନଙ୍କ ସଭାପତିତ୍ୱରେ ଏବଂ ଶ୍ରୀଯୁକ୍ତ ଆର୍ଯ୍ୟନାୟକମ୍, ଶ୍ରୀଯୁକ୍ତ କାକାସାହେବ କାଲେଲକାର, ଶ୍ରୀମତୀ ଆଶାଦେବୀ ପ୍ରଭୃତି ଭାରତର କେତେକ ବିଶିଷ୍ଟ ଭାବୁକ ଏବଂ ଚିନ୍ତାଶୀଳ ଶିକ୍ଷାତତ୍ତ୍ୱବିତ୍‌ଙ୍କର ସହଯୋଗରେ ଏହି ଯୋଜନା ୧୯୩୭ ମସିହାରେ ଓ୍ୱାର୍ଦ୍ଧାଠାରେ ପ୍ରସ୍ତୁତ ହୋଇଥିଲା।

ଏହି ଜାତୀୟ ଯୋଜନାଟି ସାତବର୍ଷବ୍ୟାପୀ। ସାତବର୍ଷ ବୟସ୍କ ଛାତ୍ର ଚଉଦବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ ଏହି ଜାତୀୟ ଶିକ୍ଷାମନ୍ଦିରରେ ଅଧ୍ୟୟନ କରିବ। ସେ ଗୋଟାଏ ମୌଳିକ ଶିଳ୍ପଶିକ୍ଷା କରିବ। ଏହି ଶିଳ୍ପଟି ଯେ କେବଳ ଗୋଟାଏ ବିଷୟରୂପେ ଧରି ନିଆହୋଇଛି

ତାହା ନୁହେଁ । ଏହା ସାହାଯ୍ୟରେ ଅନ୍ୟାନ୍ୟ ବିଷୟ ଶିକ୍ଷା ଦିଆଯିବ । ଏହା କେନ୍ଦ୍ରବିଷୟ ହୋଇ ରହିବ । ଏହାକୁ ମୂଳଦୂଆ କରି ପାଠ୍ୟ-ତାଲିକାସ୍ଥ ବିଷୟମାନଙ୍କୁ ଏହା ସହିତ ସଂପୃକ୍ତ କରାଇ ସେମାନଙ୍କୁ ଉପସ୍ଥାପିତ କରାଇବାକୁ ହେବ, ଅର୍ଥାତ୍ ଶିଳ୍ପକୁ କେନ୍ଦ୍ରକରି ପାଠ୍ୟ-ତାଲିକାର ଅନ୍ୟାନ୍ୟ ବିଷୟ ଶିକ୍ଷାଦେବାକୁ ହେବ । ଶିଳ୍ପ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଆବଶ୍ୟକତାନୁଯାୟୀ ଗଣିତ, ମାତୃଭାଷା, ଇତିହାସ ପ୍ରଭୃତି ବିଷୟମାନ ଶିକ୍ଷା ଦିଆଯିବ । ଭାରତର ସାମାଜିକ ଏବଂ ଅର୍ଥ-ନୈତିକ ଅବସ୍ଥାଦୃଷ୍ଟିରୁ ଶିଳ୍ପଶିକ୍ଷା ଏବଂ ଏହା ସହାୟତାରେ ଅନ୍ୟ ବିଷୟର ଶିକ୍ଷା ସ୍ପୃହଣୀୟ । ମନୋବିଜ୍ଞାନ ମଧ୍ୟ ଏହି ପ୍ରଣାଳୀକୁ ସମର୍ଥନ କରେ; କାରଣ କାର୍ଯ୍ୟକରି ଶିକ୍ଷା କରିବା (learning by activity ) ଏକ ସୁଚିନ୍ତିତ ନୀତି ଅଟେ । ଏପରି କରିବା ଦ୍ୱାରା ମଧ୍ୟ କର୍ମଜୀବନ ସହିତ ପାଠ୍ୟ ବିଷୟର ସଂପର୍କ ରହିବ । ତଦ୍ୱାରା ଛାତ୍ରର ଅସ୍ଥିରତା, କର୍ମସ୍ପୃହା ପ୍ରଭୃତି ପ୍ରବୃତ୍ତି ଉପଯୁକ୍ତ ମାର୍ଗରେ ପରିଚାଳିତ ହେବ । ଛାତ୍ରର ଦୈହିକ ଏବଂ ମାନସିକ ଉନ୍ନତି ସାଧିତ ହେବ । ଛାତ୍ର ପରିଶ୍ରମର ମର୍ଯ୍ୟାଦା ଓ ଗୁରୁତ୍ୱ ଅକ୍ଲେଶରେ ଅନୁଭବ କରିବ ଏବଂ ତେଣୁ ପରାଙ୍ଗପୁଷ୍ଟ ଉଦ୍ଭିଦପରି ସମାଜଉପରେ ଭାରକ୍ରାନ୍ତ ନ ହୋଇ ସ୍ୱାଧୀନଚେତା ଓ ସ୍ୱାବଲମ୍ବନଶୀଳ ନାଗରିକ ହେବ ।

ଆତ୍ମନିର୍ଭରଶୀଳତା ଏହି ଯୋଜନାର ଅନ୍ୟତମ ବିଶେଷତ୍ୱ । ଛାତ୍ରମାନେ ନିଜେ ଆତ୍ମନିର୍ଭରଶୀଳ ହେବେ । କୌଣସି ଗୋଟାଏ ଶିଳ୍ପକୁ କେନ୍ଦ୍ରକରି ପାଠ୍ୟ-ତାଲିକାସ୍ଥ ବିଷୟମାନ ଶିକ୍ଷା ଦିଆ ହେଉ-ଥିବାରୁ ଛାତ୍ରମାନେ ରୋଜଗାରକ୍ଷମ ହୋଇ ପାରିବେ । ତେଣୁ ସେମାନେ ନିଜ ଗୋଡ଼ରେ ନିଜେ ଠିଆହେବାର କ୍ଷମତା ଅର୍ଜନ କରିବେ । ଏ ଗଲା ଆତ୍ମନିର୍ଭରଶୀଳତାର ଗୋଟାଏ ଅର୍ଥ । ବିଦ୍ୟାଳୟ ମଧ୍ୟ ଆତ୍ମନିର୍ଭର-ଶୀଳ ହୋଇପାରିବ । ଛାତ୍ରମାନଙ୍କର ହସ୍ତକର୍ମ ବିକ୍ରୟଲବ୍ଧ ଅର୍ଥରେ

ବିଦ୍ୟାଳୟର ଅଧିକାଂଶ ଖର୍ଚ୍ଚ ଚଳିଯିବ । ଏହି ଯୋଜନାର ସ୍ରଷ୍ଟାଙ୍କର ଆଶା ଯେ ସରକାର ନିଜେ ହାତକାମ ଗୁଡ଼ିକ କ୍ରୟ କରି ଉତ୍ସାହିତ କରିବେ । ଅନେକ ସମାଲୋଚକ ଆତ୍ମନିର୍ଭରଶୀଳତାର ଏହି ଦ୍ୱିତୀୟ ଅର୍ଥ ବିଷୟରେ ସନ୍ଦିହାନ । ଅବଶ୍ୟ ବାଗ୍‌ଯୁଦ୍ଧରେ ଲିପ୍ତ ନ ଯାଇ ପ୍ରକୃତ କାର୍ଯ୍ୟରେ ଏହା ପରୀକ୍ଷା କରିବାର କଥା ।

ଏହି ଯୋଜନାର ସ୍ରଷ୍ଟାମାନେ ଉଚ୍ଚାଭିଳାଷୀ ଦେଶହିତୈଷୀ । ସେମାନଙ୍କର ଆକାଂକ୍ଷା ଏହି ଯେ ଭାରତର ତରୁଣ ଯୁବକ ଅଧିକ ଗଣତାନ୍ତ୍ରିକ ହେବ । ନାଗରିକ ହୋଇ ସେ ତାହାର କର୍ତ୍ତବ୍ୟ ଏବଂ ଦାୟିତ୍ୱ ହୃଦୟଙ୍ଗମ କରିବ । ସେ ଜଣେ ଉଚ୍ଚ ଧରଣର କର୍ମୀ ଏବଂ ଦେଶସେବକ ହୋଇପାରିବ । ତଦନୁଯାୟୀ ପାଠ୍ୟ-ତାଲିକାର ବିଷୟମାନ ଖଞ୍ଜା ହୋଇଅଛି । ଅଧିକନ୍ତୁ ବିଦ୍ୟାଳୟ ସମାଜର ଅନୁରୂପ ହେବ । ତେଣୁ ଛାତ୍ରକୁ ସମବାୟ ବା ସଙ୍ଘବଦ୍ଧତାର ମୂଲ୍ୟ ବୁଝିବାକୁ ହେବ ।

**ପାଠ୍ୟ-ତାଲିକା :**—( ୧ ) ବିଦ୍ୟାଳୟରେ ପାରିପାର୍ଶ୍ୱିକ ଅବସ୍ଥା ବୃଷ୍ଟିରେ ( କ ) ଲୁଗାବୁଣା ଓ ସୂତାକଟା ( ଖ ) ବଢ଼େଇକାମ ( ଗ ) କୃଷିକାର୍ଯ୍ୟ ( ଘ ) ଉଦ୍ୟାନକାମ ( ଙ ) ଚମଡ଼ାକାମ କିମ୍ବା ଅନ୍ୟ କୌଣସି ମୌଳିକଶିଳ୍ପ ବାଛିବାକୁ ହେବ । କିନ୍ତୁ ଶିକ୍ଷା ସାଙ୍ଗ କରିସାରି ଏହି ଶିଳ୍ପକୁ ବ୍ୟବସାୟରୂପେ ଗ୍ରହଣ କରିପାରିବ ସେଥିପାଇଁ ସାମର୍ଥ୍ୟ ଅର୍ଜନ କରିବାକୁ ହେବ । ( ୨ ) ମାତୃଭାଷା ( ୩ ) ଗଣିତ ଓ ( ୪ ) ସାମାଜିକ ବିଜ୍ଞାନରେ ଛାତ୍ରମାନେ ଶିକ୍ଷାପାଇବେ । ( ୫ ) ସାଧାରଣ ବିଜ୍ଞାନ ମଧ୍ୟ ପାଠ୍ୟତାଲିକାରେ ରହିବ । ପ୍ରକୃତି ପର୍ଯ୍ୟବେକ୍ଷଣ, ଉଦ୍ଭିଦବିଦ୍ୟା, ପ୍ରାଣୀବିଜ୍ଞାନ, ଶରୀରବିଦ୍ୟା, ସ୍ୱାସ୍ଥ୍ୟରକ୍ଷା, ଶାରୀରିକ ଉତ୍କର୍ଷ ବିଧାନ, ରସାୟନଶାସ୍ତ୍ର ପ୍ରଭୃତି ଏହି ସାଧାରଣ ବିଜ୍ଞାନର ଅନ୍ତର୍ଭୁକ୍ତ । ( ୬ ) ଚିତ୍ରାଙ୍କନ ଓ

(୭) ସର୍ବୋଚ୍ଚବିଦ୍ୟା ମଧ୍ୟ ପାଠ୍ୟତାଲିକାର ଅନ୍ତର୍ଭୁକ୍ତ। ପରିଶେଷରେ ସ୍ୱଭାଷା ରୂପେ ହିନ୍ଦୁସ୍ଥାନୀ ଶିକ୍ଷା ଦିଆଯିବ । ଜାତୀୟ ଶିକ୍ଷା-ଯୋଜନାରେ ଜାତୀୟ ଭାଷାର ସ୍ଥାନ ରହିବା ଏକାନ୍ତ ଆବଶ୍ୟକ।

ଏହି ପାଠ୍ୟତାଲିକା ସହିତ ଆମ୍ଭମାନଙ୍କର ପ୍ରଚଳିତ ପାଠ୍ୟ-ତାଲିକାକୁ ତୁଳନା କଲେ ଆକାଶପାତାଳ ପ୍ରଭେଦ ପରିଲକ୍ଷିତ ହୁଏ। ଜାକିର ହୋସେନ କମିଟି ରିପୋର୍ଟ ବାସ୍ତବରେ ଜାତୀୟ ଶିକ୍ଷା ପଦବାଚ୍ୟ। ଏହା ମନୁଷ୍ୟତାର ପୂର୍ଣ୍ଣ ବିକାଶ କରାଇବ। ଆଧୁନିକ ଶିକ୍ଷାଜଗତର ଚିନ୍ତାଧାରା ସହିତ ଖାପଖାଇ ଏହା ପ୍ରସ୍ତୁତ ହୋଇ ଥିବାରୁ ଏହାର ଉଦ୍ଯୋକ୍ତାମାନେ ପୂର୍ଣ୍ଣପ୍ରାଣରେ ବିଶ୍ୱାସ କରନ୍ତି ଯେ ଏହା ଭାରତ ପାଇଁ ଏକ ପ୍ରକୃଷ୍ଟ ଯୋଜନା।

**ଶିକ୍ଷକ ତାଲିମ**—ଶିକ୍ଷକଙ୍କ ଯୋଗ୍ୟତା ଉପରେ ଏହି ଯୋଜନା ସାଫଲ୍ୟ ମଣ୍ଡିତ କରାଇବା ନିର୍ଭର କରେ । ତେଣୁ ଶିକ୍ଷକଙ୍କୁ ତାଲିମ କରାଇବା ସର୍ବପ୍ରଥମ ଆବଶ୍ୟକତା ଅଟେ। ଏହି ଯୋଜନାରେ ଯେଉଁ ସାମାଜିକ ଏବଂ ଶିକ୍ଷାସମ୍ବନ୍ଧୀୟ ଆଦର୍ଶବାଦ ନିହିତ ଅଛି, ଶିକ୍ଷକ ତଦ୍ଦ୍ୱାରା ଅନୁପ୍ରାଣିତ ହେବା ଉଚିତ। ସକଳ ପାଠ୍ୟ ବିଷୟ ପରସ୍ପର ସଂପୃକ୍ତ ହେବେ ଏବଂ ସେମାନେ ମଧ୍ୟ ମୌଳିକ ଶିଳ୍ପ ସହିତ ସଂପୃକ୍ତ ହେବେ। ଏ ବିଷୟରେ ଶିକ୍ଷକ ସଂପୂର୍ଣ୍ଣ ଜ୍ଞାନ ଲାଭ କରିବେ । ତାହାହେଲେ ଜୀବନ, ଶିକ୍ଷା ଓ କାର୍ଯ୍ୟ ସଂଯୋଜିତ ହେବ। ଶିକ୍ଷକ ମଧ୍ୟ ମୌଳିକ ଶିଳ୍ପ ସମ୍ବନ୍ଧରେ ଜ୍ଞାନଲାଭ କରିବେ । ଉଲ୍ଲିଖିତ ବିଷୟ ପ୍ରତି ଦୃଷ୍ଟି ରଖି ଛଅବର୍ଷବ୍ୟାପୀ ଏକ ଯୋଜନା ଶିକ୍ଷକଙ୍କୁ ତାଲିମ କରିବା ପାଇଁ ପ୍ରସ୍ତୁତ ହୋଇଥିଲା । ଏହି ପ୍ରଣାଳୀକୁ ଯଥାସମ୍ଭବ ଶୀଘ୍ର କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଶିକ୍ଷକଙ୍କ ପାଇଁ ଗୋଟାଏ ବର୍ଷକିଆ ଯୋଜନା ପ୍ରସ୍ତୁତ ହୋଇଥିଲା। ଉହାହି ଓ

ଅଭିଜ୍ଞ ଶିକ୍ଷକମାନେ ଏଥିରେ ଯୋଗ ଦେଇପାରିବେ । ଯେଉଁମାନଙ୍କର ଉନ୍ନତ ନୈତିକ ଓ ସାମାଜିକ ଗୁଣମାନ ଅଛି, ସେହିମାନେ କେବଳ ଶିକ୍ଷକରୂପେ ପ୍ରବେଶ ଲାଭ କରିପାରିବେ । ଗାନ୍ଧିଜୀଙ୍କର ସୂଚନା ଯେ ପ୍ରତ୍ୟେକ ଶିକ୍ଷକଙ୍କର ମାସିକ ବେତନ ଟ ୨୫୯ ହେବା ଉଚିତ—ଟ ୨୦୯ ରୁ କେବେହେଁ କମ୍ ହେବ ନାହିଁ ।

ଏହି ଯୋଜନାର ନିର୍ମାଭାଗଣ ପରିଦର୍ଶନ ଏବଂ ପରୀକ୍ଷାପାଇଁ ସୁଚିନ୍ତିତ ବ୍ୟବସ୍ଥା କରିଅଛନ୍ତି । ଏ ବିଷୟରେ ଆଧୁନିକ ପ୍ରଚଳିତ ପଦ୍ଧତିରେ ଯେଉଁ ସବୁ ଦୋଷ ଅଛି, ସେମାନେ ସେସବୁ କୌଶଳର ସହିତ ପରିତ୍ୟାଗ କରିଅଛନ୍ତି ।

ନିମ୍ନଲିଖିତ ପ୍ରକାରରେ ଦୈନିକ କାର୍ଯ୍ୟକ୍ରମର ସମୟ ବିଭାଗ ସ୍ଥିରୀକୃତ ହୋଇଅଛି :—

| | |
|---|---|
| ୧ । ମୌଳିକ ଶିଳ୍ପ | ...ଘ ୩ । ୨୦ ମିନିଟ |
| ୨ । ସଙ୍ଗୀତ, ଚିତ୍ରାଙ୍କନ ଓ ଗଣିତ | ..୪୦ ମିନିଟ |
| ୩ । ମାତୃଭାଷା | ..୪୦ ମିନିଟ |
| ୪ । ସାମାଜିକ ବିଜ୍ଞାନ ଓ ସାଧାରଣ ବିଜ୍ଞାନ | ...୩୦ ମିନିଟ |
| ୫ । ଶାରୀରିକ ବିଜ୍ଞାନ | ...୧୦ ମିନିଟ |
| ୬ । ଖେଳ ଛୁଟୀ | ...୧୦ ମିନିଟ |
| ମୋଟ | ...୫ ଘଣ୍ଟା ୩୦ ମିନିଟ |

ବର୍ଷକରେ ୨୮୮ ଦିନ କାର୍ଯ୍ୟ କରିବାକୁ ହେବ—ମାସରେ ହାରାହାରି କାର୍ଯ୍ୟ ଦିବସ ୨୪ ଦିନ ଅଟେ ।

ଏହି ପ୍ରବନ୍ଧର ଉପସଂହାର କରିବା ପୂର୍ବରୁ ଶିକ୍ଷାର ମୂଳସୂତ୍ର ତକଲକୁ କାହିଁକି କରାଯାଇଛି ସେ ବିଷୟରେ ଗାନ୍ଧିଜୀ କହନ୍ତି "ତକଲି ଆମ୍ଭମାନଙ୍କର ହସ୍ତଶିଳ୍ପର ଗୋଟିଏ ପ୍ରଥମ ନିଦର୍ଶନ ଏବଂ ବହୁ ଯୁଗରୁ ଏହା ଚାଲି ଆସୁଅଛି। ଅତି ପ୍ରାଚୀନକାଳରେ ତକଲି ଆମ୍ଭମାନଙ୍କର ବସ୍ତ୍ରର ଅଭାବ ମୋଚନ କରିଥିଲା। ଚରଖାର ପ୍ରଚଳନ ଅନେକ ଦିନ ପରେ ହେଲା। ତକଲିଦ୍ୱାରା ଆମ୍ଭମାନଙ୍କର ଅଙ୍ଗୁଳିଚାଳନା ଅତି ସୁନ୍ଦରଭାବରେ ହୁଏ ଏବଂ ଖୁବ୍ ସରୁ ସୂତା କାଟିବା ପାଇଁ ଏହା ଦରକାର। କିନ୍ତୁ ଅଶିକ୍ଷିତ କାରିଗରଙ୍କ ହାତରେ ଏହାର ବ୍ୟବହାର ନିବଦ୍ଧ ଥିବାରୁ କାଳକ୍ରମେ ଏହାର ପତନ ହେଲା। ସୁତରାଂ ଏହାର ପୂର୍ବ ଗୌରବ ଫେରାଇ ଆଣିବାକୁ ହେଲେ ଏବଂ ଗ୍ରାମ୍ୟଜୀବନକୁ ଉଜ୍ଜୀବିତ ଓ ସଂଗଠିତ କରିବାକୁ ହେଲେ ତକଲି ସାହାଯ୍ୟରେ ପିଲାମାନଙ୍କର ଶିକ୍ଷା ଆରମ୍ଭ ହେବା ଉଚିତ।

ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଭାରତର ଅନେକ ପ୍ରଦେଶରେ ଚେଷ୍ଟା ଚାଲିଛି। ଏହାର ଗୁଣଗାନ କରିବାକୁ ଯାଇ ଶ୍ରୀଯୁକ୍ତ ମଶ୍ରୁୱାଲା ଯଥାର୍ଥରେ କହିଛନ୍ତି "ଏହା ସତ୍ୟ, ଅହିଂସା ଓ ଈଶ୍ୱର ବିଶ୍ୱାସ ଉପରେ ପ୍ରତିଷ୍ଠିତ"। ମୂଳତଃ ଏହାହିଁ ଗାନ୍ଧିଜୀଙ୍କର ଆଦର୍ଶ। ତେଣୁ ଯାହା ସତ୍ୟ, ଶିବ, ସୁନ୍ଦର ତାହା ନିଶ୍ଚୟ ସ୍ଥାୟୀ ହେବ ଏବଂ ସମସ୍ତେ ତାହାକୁ ସ୍ୱାଗତ କରିବେ।"

---

# ଜାତୀୟ ବିଦ୍ୟାଳୟ, ଅଦ୍ୟାର

ଏଥିପୂର୍ବରୁ ସୂଚିତ ହୋଇଅଛି ଯେ ବିଶ୍ୱବିଖ୍ୟାତ ଡାକ୍ତର ମଣ୍ଟେଶରୀ ମାନ୍ଦ୍ରାଜପ୍ରଦେଶସ୍ଥ ଅଦ୍ୟାରରେ ତାଙ୍କ ପ୍ରବର୍ତ୍ତିତ ଶିକ୍ଷାନୀତିର ପ୍ରଚଳନ କରାଇଥିଲେ । ସେଠାରେ ମଧ୍ୟ ଗୋଟିଏ ଜାତୀୟ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଏହି ଜାତୀୟ ଅନୁଷ୍ଠାନର ଉଦ୍ୟୋକ୍ତାଗଣ ଜାତୀୟ ମତବାଦୀ । ତେଣୁ ସେମାନେ ଆଧୁନିକ ଶିକ୍ଷା-ପଦ୍ଧତିର ସମ୍ପୂର୍ଣ୍ଣ ବିରୋଧୀ । ଶିକ୍ଷାଜଗତରେ ଯେଉଁ ନୂତନ ପ୍ରଣାଳୀମାନ ଅବିଷ୍କୃତ ହୋଇଅଛି ସେମାନେ ସେ ସବୁ ଗ୍ରହଣ କରିଅଛନ୍ତି । କିନ୍ତୁ ଭାରତୀୟ ଆଦର୍ଶ ଓ ଭାରତୀୟ ଜୀବନ ସହିତ ସମ୍ପର୍କ ରକ୍ଷି ଏକ ଶିକ୍ଷାନୀତି ପରୀକ୍ଷା କରିଥିଲେ । ଏହି ଜାତୀୟ ବିଦ୍ୟାଳୟରେ ଶିକ୍ଷାଜଗତର ଆଧୁନିକ ତଥ୍ୟମାନ ବ୍ୟବହାର କରି ଭାରତର ଜାତୀୟ ଜୀବନ ଗଠନ କରିବା ପାଇଁ ସକଳ ପ୍ରକାର ଉଦ୍ୟମ କରାଯାଏ ।

ଏଠାରେ ପ୍ରାୟ ଏକଶତ ଛାତ୍ର ଅଧ୍ୟୟନ କରନ୍ତି । ସେମାନଙ୍କୁ ଶିକ୍ଷା ଦେବା ପାଇଁ ପ୍ରାୟ ୧୬ ଜଣ ଅଧ୍ୟାପକ ନିଯୁକ୍ତ ଥାନ୍ତି । ବିଦ୍ୟାଳୟଟି ଗୋଟାଏ ଗ୍ରାମ ପରି । ଛାୟାପ୍ରଦ ବୃକ୍ଷମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ୧୦ ଗୋଟି କୁଟୀର ଅବସ୍ଥିତ । ସେଗୁଡ଼ିକ ଅଧ୍ୟାପନା ପାଇଁ ଏବଂ ଛାତ୍ରାବାସ ପାଇଁ ବ୍ୟବହୃତ ହୁଏ । କୁଡ଼ିଅ-ଘରର ଛାତ ନଡ଼ିଆ ପତରେ ତିଆରି । କାନ୍ଥ ଛଅଫୁଟ ଉଚ୍ଚ ଏବଂ ବାଉଁଶ ତାଟିରେ ତିଆରି । କୁଟୀରମାନଙ୍କ ସମ୍ମୁଖରେ ଗୋଟାଏ ଗୋଟାଏ ଉଦ୍ୟାନ ଥାଏ । ସେଥିରେ ଛାତ୍ରମାନେ ବୃକ୍ଷଲତା ଲଗାଇ ସେମାନଙ୍କର ଯତ୍ନ ନିଅନ୍ତି । ଆକବର, ଟିପୁସୁଲତାନ, ଶିବାଜୀ, ରଣଜିତ୍‌ସିଂହ ପ୍ରଭୃତି ଭାରତୀୟ ବୀରମାନଙ୍କ ନାମାନୁସାରେ ଏହି

କୃତିତ୍ୱରମାନ ଜାମିତ । ତେଣୁ ଏହି ବିଦ୍ୟାଳୟର ଏ ପ୍ରକାର ପରିବେଷ୍ଟନୀ ଜାତୀୟ ଶିକ୍ଷାପାଇଁ ଏକାନ୍ତ ଅନୁକୂଳ । ଅଧ୍ୟାପକମାନେ ପୂର୍ଣ୍ଣ ପ୍ରାଣରେ ଶିକ୍ଷା ଦିଅନ୍ତି ।

ସାରଲ୍ୟ ଓ ଆଡ଼ମ୍ବରଶୂନ୍ୟତା ଏହି ଛାତ୍ରମାନଙ୍କ ଜୀବନର ବିଶେଷତ୍ୱ । ଖାଦ୍ୟ, ପରିଚ୍ଛଦ ଓ ଗୃହର ସାଜସଜ୍ଜାରେ ଏହା ବିଶେଷଭାବରେ ପ୍ରତିଫଳିତ । ଛାତ୍ରମାନେ ନିରାମିଷାଶୀ । ସେମାନେ ଖୁବ୍ ସାଧାରଣ ପୋଷାକ ପିନ୍ଧି ବାହାରନ୍ତି । ବାସ୍ତବରେ ଏହାହିଁ ପ୍ରାଚୀନ ଭାରତୀୟ ଜୀବନର ଢଙ୍ଗ ଥିଲା । ସାତ୍ତ୍ୱିକଭାବାପନ୍ନ ଭାରତୀୟ ଅଧିଗଣ କେବେହେଁ ଆଡ଼ମ୍ବରପ୍ରିୟ ନ ଥିଲେ । ସାରଲ୍ୟ ଓ ବିମଳଚିନ୍ତାଭାବ ସେମାନଙ୍କର ଜୀବନର ବ୍ରତ ଥିଲା । ଏହି ପନ୍ଥାରେ ଭାରତୀୟ ଛାତ୍ରମାନଙ୍କୁ ଶିକ୍ଷିତ କରାଇ ଦେଶର କଙ୍କାଳକୁ ସୁଦୃଢ଼ କରାଇବା ଏହି ବିଦ୍ୟାଳୟର ଲକ୍ଷ୍ୟ ।

ଛାତ୍ରମାନେ ତଳେ ଚଟେଇ ଉପରେ ବସି ନୀଚୁ ଡେସ୍କ ଉପରେ ବହି ରଖି ପଢ଼ନ୍ତି । ମୁକ୍ତବାୟୁ ଓ ଆଲୋକ ପାଇବାର ସୁବିଧା ଅଛି । ପାଠପଢ଼ା ମୁକ୍ତ ଆକାଶତଳେ ଉନ୍ମୁକ୍ତ ପ୍ରାନ୍ତରରେ ହୁଏ । ଛାତ୍ରମାନଙ୍କୁ ସୁସ୍ଥକାୟ ଓ ସବଳ ରଖିବା ପାଇଁ ଚେଷ୍ଟା ଚାଲିଥାଏ । ପରେଇ କବିରାଜଙ୍କ-ଦ୍ୱାରା ସେମାନଙ୍କର ଉଚ୍ଚତା ଓ ଓଜନ ପ୍ରତିମାସ ନିଆଯାଏ । ତିନିମାସରେ ଥରେ ସ୍ୱାସ୍ଥ୍ୟପରୀକ୍ଷା କରାଯାଏ । ଦରିଦ୍ର ପରିବାରରୁ ଆସିଥିବା ଛାତ୍ରମାନଙ୍କର ରକ୍ତହୀନତା ଦୂରକରିବା ପାଇଁ ଭଲ ଖାଦ୍ୟ ଦିଆଯାଏ । ପିଲାମାନେ ରୀତିମତ ଖେଳାବୁଲା କରନ୍ତି ଏବଂ ଶାରୀରିକ ଅଙ୍ଗଚାଳନା ମଧ୍ୟ କରନ୍ତି ।

ବିଦ୍ୟାଳୟର ଅନ୍ୟତମ ବିଶେଷତ୍ୱ ଏହି ଯେ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସହଯୋଗ ଥାଏ । ଛାତ୍ରମାନେ ଜାଣନ୍ତି ଯେ ଶିକ୍ଷକମାନେ ଅଧ୍ୟାପନାକୁ ଜୀବିକାର୍ଜ୍ଜନର ଉପାୟ ରୂପେ ଅବଲମ୍ବନ କରି ନାହାନ୍ତି । ସେମାନଙ୍କ ମଧ୍ୟରୁ କେତେକ କେବଳ

ଚଳିବା ପାଇଁ ଯେତିକି ଝଙ୍କା ଦରକାର ତାହା ଦରମା ସ୍ୱରୂପ ନିଅନ୍ତି । କିନ୍ତୁ ସେମାନେ ସମସ୍ତେ ଛାତ୍ରମାନଙ୍କର ଉନ୍ନତି କରିବା ପାଇଁ ସବୁବେଳେ ଚେଷ୍ଟିତ । ଶୃଙ୍ଖଳାର ଗୁରୁତା ଓ ଦମନନୀତି ଛାତ୍ରମାନଙ୍କୁ ଶାସନ କରିବାପାଇଁ ଆଦୌ ପ୍ରୟୋଗ କରାଯାଏ ନାହିଁ; ବରଂ ଛାତ୍ରମାନେ ନିଜକୁ ନିଜେ ଶାସନ କରନ୍ତି । ବିଦ୍ୟାଳୟର ସମୂହ ଉନ୍ନତିକୁ ଲକ୍ଷ୍ୟ ରଖି ଛାତ୍ର ଓ ଶିକ୍ଷକମାନେ ସହଯୋଗ କରି କାମ କରନ୍ତି । ଛାତ୍ରମାନେ ଶିକ୍ଷା କରିବାକୁ ଯେତିକି ଇଚ୍ଛୁକ ଶିକ୍ଷକମାନେ ଶିକ୍ଷାଦେବାକୁ ସେତିକି ଉଦ୍‌ବିଗ୍ନ । ଛାତ୍ରମାନେ ଏହି ଶିକ୍ଷାର ଉପାଦେୟତା ଉପଲବ୍ଧି କରି ଶିକ୍ଷାଗ୍ରହଣ କରନ୍ତି ଏବଂ ଶିକ୍ଷକମାନେ ଦେଶସେବକ ରୂପେ ଜାତୀୟ ଉନ୍ନତିକୁ ଲକ୍ଷ୍ୟ କରି ଶିକ୍ଷା ଦିଅନ୍ତି । ପ୍ରତ୍ୟେକ ଶିକ୍ଷାକ୍ଷେତ୍ରରେ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ଏ ପ୍ରକାର ସୌହାର୍ଦ୍ଦ୍ୟପୂର୍ଣ୍ଣ ଆନ୍ତରିକ ମନୋଭାବ ରହିବା ଏକାନ୍ତ ବାଞ୍ଛନୀୟ ।

ମାତୃଭାଷା ଶିକ୍ଷାଉପରେ ଖୁବ୍ ଜୋର ଦିଆଯାଏ । ପ୍ରଥମ ପାଠଶ୍ରେଣୀରେ ତାମିଲଶିକ୍ଷା ମାଧ୍ୟମରୂପେ ବ୍ୟବହାର କରାଯାଏ । ୩ୟ ଶ୍ରେଣୀରୁ ଇଂରାଜୀକୁ ଦ୍ୱିତୀୟ ଭାଷାରୂପେ ଶିକ୍ଷା ଦିଆଯାଏ । ପ୍ରକୃତିପାଠ ଓ ଉଦ୍ୟାନକର୍ମ ପାଠ୍ୟତାଲିକାର ଅନ୍ତର୍ଭୁକ୍ତ । ପଶୁପାଳନ ମଧ୍ୟ ଶିକ୍ଷାଦିଆଯାଏ । ଛାତ୍ରମାନେ ନିଜେ ପଶୁପାଳନ କରି "ଜୀବପ୍ରତି ଦୟା" ଏହି ମହାନୁଦାର ନୀତି ଶିକ୍ଷାଲାଭ କରନ୍ତି । ଭାରତୀୟ ଜାତୀୟ ଜୀବନ ସହିତ ଗୋରୁର ସଂପର୍କ ଅଛି । ଗୋରୁ ଭାରତୀୟର ସମ୍ପଦ ଓ ସମ୍ବଳ ଅଟେ । ତେଣୁ ପଶୁପାଳନ ଶିକ୍ଷାକରିବା ଦ୍ୱାରା ଭାରତୀୟ ଜୀବନ ନିଶ୍ଚୟ ସମୃଦ୍ଧ ଏବଂ ଉନ୍ନତ ହେବ । ଲୁଗାବୁଣା, ଲୁଗାରଙ୍ଗାଇବା ଓ ବଢ଼େଇକାମ ମଧ୍ୟ ଶିକ୍ଷା ଦିଆଯାଏ । ଦଶମ ଶ୍ରେଣୀରେ ଯେଉଁ ପିଲାମାନେ ପାଠ ଶେଷକରି

ଅଙ୍କ ପାଠ ପଢ଼ିବାକୁ ଚାହାନ୍ତି ସେମାନଙ୍କୁ ଏହି ଶିଳ୍ପମାନଙ୍କ ମଧ୍ୟରୁ ଗୋଟିକରେ ବିଶିଷ୍ଟତା ଅର୍ଜନ କରିବାକୁ ଦିଆଯାଏ । ସେମାନେ ଶିକ୍ଷା କରୁଁ କରୁଁ ଗୋଟାଏ ଦୋକାନ ମଧ୍ୟ ଚଳାଇବାକୁ ଶିଖନ୍ତି । ତେଣୁ ଛାତ୍ରମାନେ ସାଂସାରିକ ଜୀବନଯାପନ କରିବାକୁ ସାମର୍ଥ୍ୟ ଅର୍ଜନ କରନ୍ତି ।

ସାଢ଼େ ପାଞ୍ଚଟାରୁ ଛଅଟା ମଧ୍ୟରେ ଛାତ୍ରମାନେ ଶଯ୍ୟା ତ୍ୟାଗ କରନ୍ତି । ସେମାନେ ଲୁଗା ଧୁଅନ୍ତି ଏବଂ ସ୍ନାନସାରି ସାତଟା ବେଳକୁ କିଛି ଖାଇଦିଅନ୍ତି । ତତ୍ପରେ ସେମାନେ ଧର୍ମପୁସ୍ତକରୁ ଗୀତ ଗାଆନ୍ତି ଓ ଶ୍ଳୋକ ଆବୃତ୍ତି କରନ୍ତି । ସକାଳେ ସାତଟା ପନ୍ଦରମିନିଟରୁ ଦଶଟା ପର୍ଯ୍ୟନ୍ତ ଶ୍ରେଣୀରେ ପାଠ ପଢ଼ା ହୁଏ । ତହିଁଉତ୍ତାରୁ ଉପରବେଳା ଅଢ଼େଇଟା ପର୍ଯ୍ୟନ୍ତ ସେମାନେ ବିଶ୍ରାମ ନିଅନ୍ତି । ଇତମଧ୍ୟରେ ସାଢ଼େ ଏଗାରଟା ବେଳେ ଦିବାଭୋଜନ କରାଯାଏ । ବିଶ୍ରାମ ସମୟକୁ ଖେଳରେ, ଉଦ୍ୟାନକର୍ମରେ ଏବଂ ଦୋକାନରେ କାମ କରି କଟାଇ ଦିଆଯାଏ । ଅଢ଼େଇଟାରୁ ସାଢ଼େ ଚାରିଟା ପର୍ଯ୍ୟନ୍ତ ହାତକାମ ଓ ସାଧାରଣ ମାନସିକ ପରିଶ୍ରମ କରାଯାଏ । ତା’ପରେ ଖାଇବାକୁ ମଧ୍ୟ କିଛି ସମୟ ଦିଆଯାଏ । କିଛି ସମୟ ଖେଳିସାରି ଛାତ୍ରମାନେ ସାତଟାବେଳେ ପୁଣି ସ୍ନାନ କରନ୍ତି ଓ ସାଢ଼େ ସାତଟାବେଳେ ସାନ୍ଧ୍ୟ-ଭୋଜନ ସମାପ୍ତ ହୁଏ । ତତ୍ପରେ ପ୍ରାର୍ଥନା, ପଠନ ଓ ସଂଗୀତ ପରେ ସେଦିନର କାର୍ଯ୍ୟ ଶେଷ ହୁଏ ।

ଯେଉଁ ଶିକ୍ଷା ପଦ୍ଧତିରେ ଭାରତୀୟ ପ୍ରାଚୀନ ଆଦର୍ଶ ଅକ୍ଷୁଣ୍ଣ ରହିଛି ତାହା ନିଶ୍ଚୟ ଭାରତର ତରୁଣ ଯୁବକଙ୍କୁ ଉପଯୁକ୍ତ ମାର୍ଗରେ ଗଠନ କରିବ । ଏହା ଭାରତୀୟଙ୍କୁ ଭାରତର କୃଷ୍ଟି, ସଂସ୍କୃତି ତଥା ସଭ୍ୟତାରେ ଦୀକ୍ଷିତ କରାଇବ । ଆମ୍ଭମାନଙ୍କ ଶିକ୍ଷାପଦ୍ଧତିରେ ଭାରତୀୟ ଆଦର୍ଶ ରହୁ । ତାହାହେଲେ ଆମର ଶିକ୍ଷିତ ସମାଜ ସାଧାରଣ

ଲୋକଙ୍କଠାରୁ ପୃଥକ୍ ହୋଇ ରହିବ ନାହିଁ ଏବଂ ସାଧାରଣ ଲୋକଙ୍କର ଶିକ୍ଷାପ୍ରତି ଘୃଣା ରହିବ ନାହିଁ। ବରଂ ଶିକ୍ଷାଲୋକ ପ୍ରସାର ଲାଭ କରିବ। ଦେଶର ଭବିଷ୍ୟତ ଉଜ୍ଜ୍ୱଳ ହେବ। ଶିକ୍ଷିତ ଯୁବକଗଣ ଦେଶ ଓ ଦଶର ହିତସାଧନ କରିବେ।

---

## ବୋଧନା

ସମାଜରେ ଅସହାୟ କିଏ ? ଉତ୍ତର ମିଳିପାରେ—ଧନ, ଜନ ଓ ଐଶ୍ୱର୍ଯ୍ୟ ସୁଖରୁ ବଞ୍ଚିତ ଲୋକ ଅସହାୟ । ଅନେକ ଲୋକ ବିପୁଳ ବିଭବର ପ୍ରତ୍ୟାଶୀ ହୋଇ ହତାଶ ହେଲେ ନିଜକୁ ହତଭାଗ୍ୟ ବୋଲି ମନେ କରନ୍ତି। ଅନେକ ଅସନ୍ତୋଷର ବୀଜ ନିଜ ହୃଦୟରେ ବପନ କରି ସବୁବେଳେ ନିଜ କପାଳରେ ହାତ ମାରନ୍ତି ଏବଂ ଦୀର୍ଘନିଃଶ୍ୱାସ ପକାଇ ଅଶ୍ରୁବିସର୍ଜନ କରନ୍ତି। ବିଷୟଟି ବିଚାର କଲେ ଜଣାଯିବ ଯେ, ସୁଖଭୋଗର ସୀମା ନାହିଁ । ଆଶା ମନୁଷ୍ୟକୁ ଏକ ଅସୀମ ରାଜ୍ୟରେ, ପହଞ୍ଚାଇ ଦିଏ। କିନ୍ତୁ ଯେଉଁମାନଙ୍କର ହସ୍ତ, ପଦ, ଚକ୍ଷୁ କର୍ଣ୍ଣ ପ୍ରଭୃତି ନାହିଁ ବା ଥିଲେ ମଧ୍ୟ ଅକାମୀ ସେମାନେ ପ୍ରକୃତରେ ଅସହାୟ। ମନୁଷ୍ୟ ପରି ବଞ୍ଚିରହିବା ପାଇଁ ଏମାନଙ୍କର ଅଧିକାର ନାହିଁ। ଚକ୍ଷୁଦ୍ୱାରା ଆମ୍ଭେମାନେ ଅନାୟାସରେ କେତେ ସୁଖଭୋଗ କରୁନାହୁଁ । କିନ୍ତୁ ଅନ୍ଧ ସେଥିରୁ ବଞ୍ଚିତ। ହସ୍ତ, ପଦ, ଚକ୍ଷୁ ପ୍ରଭୃତିର ଚାଳକ ମନ। ବାହାରର ଖବର ବା ଭାବ ହସ୍ତ, ପଦ, ଚକ୍ଷୁ ପ୍ରଭୃତିରେ ଥିବା ସ୍ନାୟୁ ଦ୍ୱାରା ମନକୁ ଯାଏ ଏବଂ ଆମ୍ଭେ ସେସବୁ ବିଷୟରେ ଜ୍ଞାନଲାଭ କରୁଁ । କିନ୍ତୁ ଯାହାର ମନ ବିକୃତ, ସେ ଲୋକ ନିତାନ୍ତ ଅସହାୟ। ସଂସାରରେ ଜଡ଼ବୁଦ୍ଧି ବୋକାମାନେ ପ୍ରକୃତରେ ହତଭାଗ୍ୟ।

ଏହି ଜଡ଼ବୁଦ୍ଧି ବା ମନ୍ଦମାନସିକ-ଶକ୍ତିସମ୍ପନ୍ନ ଲୋକମାନଙ୍କ ପ୍ରତି ସ୍ନେହଭାବ ରଖିବାଦ୍ୱାରା ସମାଜର ଉପକାର ହୁଏ । ଏମାନଙ୍କର ଉପକାର କରିବା ନିମିତ୍ତ ବୋଧନାର ଶିକ୍ଷାନୁଷ୍ଠାନ ସୃଷ୍ଟି ହୋଇଅଛି । ବୋଧନା ବଙ୍ଗପ୍ରଦେଶରେ—ଖଡ଼ଗ୍‌ପୁର ଠାରୁ ୧୯ ମାଇଲ ଦୂରରେ । ତୃତୀୟଶ୍ରେଣୀରେ ଗାଡ଼ିଭଡ଼ା ଖଡ଼ଗ୍‌ପୁରଠାରୁ ଛଅ ଅଣା । ଜଡ଼ବୁଦ୍ଧି ବାଳକବାଳିକାମାନଙ୍କୁ ଶ୍ରେଣୀ-ବିଭାଗ କରି ଶିକ୍ଷାଦେବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ । ଭାରତରେ ଏ ପ୍ରକାର ଅନୁଷ୍ଠାନ ଅନ୍ୟତ୍ର ନାହିଁ କହିଲେ ଚଳେ । ଆମ୍ଭମାନଙ୍କର ମସ୍ତିଷ୍କଦ୍ୱାରା ଆମର ସକଳ କାର୍ଯ୍ୟ ନିୟନ୍ତ୍ରିତ ହୋଉଅଛି । ସାଧାରଣ ମନୁଷ୍ୟର ମସ୍ତିଷ୍କ ସୁଚାରୁରୂପେ କାର୍ଯ୍ୟ କରେ । ଏଥିରେ ଅନେକଗୁଡ଼ିଏ ସ୍ନାୟୁକେନ୍ଦ୍ର ଥାଏ । ଏମାନେ ବାହାରୁ ସମ୍ବାଦ ଗ୍ରହଣ କରନ୍ତି ଏବଂ ପ୍ରତି ବଦଳରେ ସମ୍ବାଦ ପ୍ରେରଣ କରନ୍ତି । କିନ୍ତୁ ଯେଉଁ ମନୁଷ୍ୟର ମସ୍ତିଷ୍କରେ ଏହି ସ୍ନାୟୁକେନ୍ଦ୍ର ଉପଯୁକ୍ତ ସଂଖ୍ୟାରେ ନ ଥାଏ କିମ୍ବା ଉପଯୁକ୍ତଭାବରେ କାମ କରୁ ନ ଥାଏ ସେମାନଙ୍କୁ ଜଡ଼ବୁଦ୍ଧି କହନ୍ତି । ଆଜକୁ ପ୍ରାୟ ୧୩ ବର୍ଷ ହେଲା ବୋଧନାରେ ଏହି ଶିକ୍ଷାମନ୍ଦିର କାର୍ଯ୍ୟ କରିଆସୁଅଛି । ପୁସ୍ତକପାଠ ଏଠାରେ ବିଶେଷ ଭାବରେ କରାଯାଏ ନାହିଁ । ପିଲାମାନେ ଗୀତ ଓ ନାଚରେ ସନ୍ଧ୍ୟାସମୟ କଟାନ୍ତି । ଦିନରେ ଖୁବ୍ ପ୍ରଫୁଲ୍ଲ ରହିବା ପାଇଁ ସେମାନଙ୍କୁ ଉତ୍ସାହିତ କରାଯାଏ । ପ୍ରତ୍ୟେକ ଛାତ୍ର ତାହାର ନିଜ କାମ ନିଜେ କରୁ—ଏହା ସେମାନଙ୍କୁ କୁହାଯାଏ ।

ଶ୍ରୀଯୁକ୍ତ ଗିରିଜାଭୂଷଣ ମୁଖାର୍ଜି ଏହି ଅନୁଷ୍ଠାନର ସ୍ୱତ୍ୱାଧିକାରୀ । ସେ କଲିକତା ହାଇକୋର୍ଟର ଏଡଭୋକେଟ । ସେ ତାଙ୍କର ସମସ୍ତ ବ୍ୟୟରେ ଏହି ଅନୁଷ୍ଠାନ ଚଳାନ୍ତି । ସେ ପ୍ରତି ସପ୍ତାହରେ କେତେକ ଦିନ ଏଠାରେ ରହନ୍ତି । ନିଜେ ମଧ୍ୟ ଶିକ୍ଷା ଦିଅନ୍ତି । ବାହାର ସହିତ ସେ ଏହି ବିଦ୍ୟାଳୟକୁ ସଂପୃକ୍ତ କରାନ୍ତି । ସେ ନିଜେ ବଡ଼ ଉଦାରମନା ଓ

ତ୍ୟାଗୀ । ସେ ନିଜ ଆୟର ଅଧିକାଂଶ ଏଠାରେ ଖର୍ଚ୍ଚ କରନ୍ତି । କଥିତ ଅଛି ଯେ, ତାଙ୍କର ଗୋଟିଏ ପୁଅ ଜଡ଼ବୁଦ୍ଧି ଥିଲା । ସେ ତାକୁ ଭଲ କରାଇବା ପାଇଁ ନାନାଦେଶର ଜଡ଼ବୁଦ୍ଧି ବାଳକମାନଙ୍କ ବିଷୟ ପଢ଼ି ଏହି ଅନୁଷ୍ଠାନର ପ୍ରତିଷ୍ଠା କରାଇଲେ । ପ୍ରଥମେ ଏହା ଖୁବ୍ କ୍ଷୁଦ୍ର ସ୍ଥାନରେ ଅନୁଷ୍ଠିତ ହେଉଥିଲା । ବର୍ତ୍ତମାନ ଏହାର ହତାର କ୍ଷେତ୍ରଫଳ ପ୍ରାୟ ୧୨ ଏକର ହେବ । ଏଥିମଧ୍ୟରେ ଫଳୋଦ୍ୟାନ, ବିଦ୍ୟାଳୟ ଗୃହ, ଶିକ୍ଷକମାନଙ୍କ ରହିବା ଘର, ଖେଳପଡ଼ିଆ ଇତ୍ୟାଦି ଅଛି ।

ମିଷ୍ଟର ସେରଉଡ଼୍ (Sherwood) ଏବଂ ତାଙ୍କର ସହଧର୍ମିଣୀ ଏଠାରେ ମଧ୍ୟ ଶିକ୍ଷାଦିଅନ୍ତି । ଏଦୁହେଁ ଇଉରୋପୀୟ ମିଶନାରୀ ଅଟନ୍ତି । କିନ୍ତୁ ଏମାନଙ୍କର ଖାଦ୍ୟ ଓ ପୋଷାକ ସମ୍ପୂର୍ଣ୍ଣରୂପେ ଭାରତୀୟ ହୋଇଅଛି । ଏମାନେ ଚଳିବା ପାଇଁ ଭରି ନିଅନ୍ତି । ଏମାନେ ସରଳ ଗାଉଁଲି ବଙ୍ଗଳା ଭାଷାରେ କଥାବାର୍ତ୍ତା କରନ୍ତି । ଦୁହେଁ ବିଦ୍ୟାନୁରାଗୀ ଓ ତ୍ୟାଗୀ । ପିଲାମାନଙ୍କୁ ନିଜର ସନ୍ତାନ ରୂପେ ମନେ କରି ସେମାନଙ୍କୁ ସ୍ନେହରେ ଶିକ୍ଷା ଦିଅନ୍ତି । ପିଲାମାନେ ଏମାନଙ୍କୁ ଏତେ ଭଲପାଅନ୍ତି ଯେ, ଏମାନଙ୍କୁ "ଦାଦାବାବୁ" ଓ "ଦିଦିମଣି" ବୋଲି ଡାକନ୍ତି । ଭାରତର ବିଭିନ୍ନ ସ୍ଥାନରୁ ବିଶେଷତଃ ବଙ୍ଗଳାର ଛାତ୍ର ଛାତ୍ରୀମାନେ ଏଠାରେ ଶିକ୍ଷାପାଅନ୍ତି । କିନ୍ତୁ ସମସ୍ତେ ସେରଉଡ଼୍ ଓ ତାଙ୍କ ସ୍ତ୍ରୀଙ୍କୁ ଅତି ଭଲ ପାଅନ୍ତି । ଯେଉଁଠାରେ ସ୍ନେହ, ଭକ୍ତି, ପ୍ରେମ ଓ ଉଦ୍ୟମଶୀଳତା ଥାଏ, ସେଠାରେ ପ୍ରକୃତରେ ଶିକ୍ଷାର ବାୟୁମଣ୍ଡଳ ଗଠିତ ହୁଏ ।

ଏହି ଦୁଇଜଣଙ୍କ ଛଡ଼ା ସେଠାରେ ଡାକ୍ତର ମଧ୍ୟ ଥାନ୍ତି । ସେ ପିଲାମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷା ଓ ଖାଦ୍ୟବିଚାର କରନ୍ତି । ସେ ପିଲାମାନଙ୍କୁ ଶ୍ରେଣୀ ବିଭାଗ କରିବାରେ ସାହାଯ୍ୟ କରନ୍ତି । ତାଙ୍କ ଛଡ଼ା ଆଉ ଦୁଇ ଜଣ ଶିକ୍ଷୟିତ୍ରୀ ଥାନ୍ତି ।

ବର୍ତ୍ତମାନ ସେଠାରେ ୬୦ ଜଣ ଛାତ୍ରଛାତ୍ରୀ ଅଛନ୍ତି । କେତେକଙ୍କର ବୟସ ଛଅବର୍ଷରୁ ଊଣା ଏବଂ ଅନ୍ୟ କେତେକଙ୍କର ବୟସ ୧୮ ବର୍ଷରୁ ଅଧିକ ହେବ । ସେମାନେ କୃଷ୍ଣକାୟ, ଛିଣ୍ଡା ଜାମା ଓ ମଇଳା ଲୁଗା ସାଧାରଣତଃ ପିନ୍ଧିଥାନ୍ତି । ମନ ଇଚ୍ଛା ଖେଳନ୍ତି, ନାଚନ୍ତି ଓ ଗୀତ ଗାଆନ୍ତି । କେତେକ ମଧ୍ୟ ବିକୃତ ମୁଖ କରି ଏଣେ ତେଣେ ବୁଲୁଥାନ୍ତି । ଖାଇବାପୂର୍ବରୁ ସମସ୍ତେ ଏକତ୍ର ହୁଅନ୍ତି ଓ ହାତଯୋଡ଼ି ଉଚ୍ଚସ୍ୱରରେ "ଜୟଗୁରୁ ବୋଧନା" ଏକତ୍ର କହି ଭୋଜନ କରନ୍ତି । ସେମାନେ ଛୋଟ ଛୋଟ ଗୀତ ବଙ୍ଗଳାରେ ଗାଆନ୍ତି । ଗୋଟିଏ ଗୀତର କେତେକ ଧାଡ଼ି ତଳେ ଦିଆଗଲା ।

"ଆମରା ସବାଇ ଭାଇ, ଭାଇ—
ଆମରା ସବାଇ ଭାଇ,
ମାୟେର କାଜେ ଜୀବନ ଦିତେ
ଚଲ ସବାଇ ଯାଇ ଯାଇ
ଚଲ ସବାଇ ଯାଇ ।" ଇତ୍ୟାଦି

ସେମାନଙ୍କର ଗୋଟାଏ ପ୍ରଦର୍ଶନୀ ଗୃହ ଅଛି । ସେଥିରେ ସେମାନଙ୍କର ହାତକାମ ସବୁ ଥାଏ । ସେମାନେ ମନରୁ ଡଙ୍ଗା, ଘର, ପୁରୁଷ, ସ୍ତ୍ରୀ ପ୍ରଭୃତି କରିଥାନ୍ତି । ସାଧାରଣ ଧରଣର ଲୁଗା ବୁଣା ମଧ୍ୟ ଶିକ୍ଷାଦିଆଯାଏ । ମୋଟ ଉପରେ ସମସ୍ତ ପ୍ରକାର କାର୍ଯ୍ୟମୂଳକ ପରୀକ୍ଷାର (Performance tests) ବ୍ୟବହାର କରାଯାଏ । ଯେଉଁମାନେ ଜନ୍ମରୁ ଜଡ଼ ସେମାନଙ୍କ ପାଇଁ ଏଠାରେ ବିଶେଷ କିଛି କରାଯାଏ ନାହିଁ । କିନ୍ତୁ ଯେଉଁମାନଙ୍କର ମସ୍ତିଷ୍କ କ୍ରମେ ଖରାପ ହୋଇଯାଇଅଛି ତାହାକୁ ମରାମତି କରାଇବା ପାଇଁ ଏଠାରେ ଶିକ୍ଷା ଦିଆହୁଏ । ବିନେଟ୍ ସାଇମନ ( Binet Simon test ) ପରୀକ୍ଷା ପ୍ରୟୋଗ କରି ଛାତ୍ରମାନଙ୍କର ଶ୍ରେଣୀବିଭାଗ କରାଯାଏ । ବୁଦ୍ଧିର କହିତା

ଅଭ୍ୟାସଦ୍ୱାରା ନଷ୍ଟ କରାଯାଏ ଏବଂ କ୍ରମେ ସେମାନଙ୍କୁ ସତର୍କ ଓ ତତ୍ପର ହେବାକୁ ଅଭ୍ୟସ୍ତ କରାଯାଏ । ଗିରୀନ୍ଦ୍ରବାବୁ ଦେଶୀୟ ରୀତି ଅନୁଯାୟୀ କେତେକ ନୂତନ ପରୀକ୍ଷା (tests) ସ୍ଥିର କରିଅଛନ୍ତି । ଜଡ଼ବୁଦ୍ଧି ପିଲାମାନଙ୍କୁ ସହାନୁଭୂତିବ୍ୟଞ୍ଜକ ସ୍ନେହ ବ୍ୟବହାର ଦ୍ୱାରା ନାଗରିକରୂପେ ପରିଣତ କରିବାକୁ ସେ ଚେଷ୍ଟା କରୁଅଛନ୍ତି ।

ତାଙ୍କର ଧାରଣା ଯେ, ଭାରତରେ ଜଡ଼ ବୁଦ୍ଧି ବାଳକମାନଙ୍କର ସଂଖ୍ୟା ଖୁବ୍ ବେଶୀ । ଇଂଲଣ୍ଡ ବା ଆମେରିକାରେ ଏମାନଙ୍କର ସଂଖ୍ୟା ଖୁବ୍ କମ୍ । ଏହାର କାରଣ ସ୍ୱରୂପ ସେ କହନ୍ତି ଯେ, ଭାରତରେ ସାକ୍ଷରତା କେବଳ ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ସୀମାବଦ୍ଧ । ପାଶ୍ଚାତ୍ୟ ଦେଶମାନଙ୍କରେ ଶିକ୍ଷାର ପ୍ରସାର ଖୁବ୍ ଦ୍ରୁତ ଗତିରେ ହେଉଥିବାରୁ ଲୋକମାନେ ମସ୍ତିଷ୍କର ଚାଳନା ବିଶେଷଭାବରେ କରୁଅଛନ୍ତି । ତେଣୁ ସେମାନଙ୍କର ସଂବାଦବହନ କରୁଥିବା ସ୍ନାୟୁମଣ୍ଡଳ ଏବଂ ସ୍ନାୟୁକେନ୍ଦ୍ର ଖୁବ୍ କାର୍ଯ୍ୟକାରୀ ହୋଇ ରହୁଅଛି । ତେଣୁ ସେ ଦେଶରେ ବୁଦ୍ଧିର ଜଡ଼ତା ସେତେ ବେଶୀ ଦେଖାଯାଉ ନାହିଁ । ଦ୍ୱିତୀୟ କାରଣ ଏହି ଯେ, ଭାରତରେ ଜଡ଼ବୁଦ୍ଧି ଲୋକମାନେ ଅବାଧରେ ବିବାହ କରି ପାରୁଅଛନ୍ତି । ତେଣୁ ସେମାନଙ୍କର ସନ୍ତାନମାନେ ମଧ୍ୟ ଜଡ଼ବୁଦ୍ଧି ହେଉଅଛନ୍ତି । କିନ୍ତୁ ଇଂଲଣ୍ଡ ବା ଆମେରିକାରେ ଜଡ଼ବୁଦ୍ଧି ଲୋକମାନଙ୍କୁ ବିବାହ କରିବାକୁ ଉତ୍ସାହିତ କରାଯାଏ ନାହିଁ । ଯେଉଁମାନେ ବିବାହ କରନ୍ତି ସେମାନଙ୍କର ପ୍ରଜନନ ଶକ୍ତି ନଷ୍ଟ କରି ଦିଆଯାଏ । ପରିଶେଷରେ ଗିରୀନ୍ଦ୍ରବାବୁ କହନ୍ତି ଯେ, ଭାରତରେ ଭୂକମ୍ପ, ମହାମାରୀ, ବନ୍ୟା, ଦୁର୍ଭିକ୍ଷ ଅତି ପ୍ରବଳ । ଏହି ଅନିଶ୍ଚିତ ଅବସ୍ଥାର ସମ୍ମୁଖୀନ ହଠାତ୍ ହେବାଦ୍ୱାରା ମସ୍ତିଷ୍କରେ ଥିବା ସ୍ନାୟୁକେନ୍ଦ୍ର ବା କେତେକ ସ୍ନାୟୁ ଶିଥିଳ ଓ ଜଡ଼ ହୋଇଯାଏ । ବଙ୍ଗଳାରେ

ଯେଉଁ ଦୁର୍ଭିକ୍ଷ ଅଳ୍ପ କେତେଦିନ ତଳେ ହୋଇଥିଲା, ତାହା ଅନେକଙ୍କର ପ୍ରାଣନାଶ କଲା ଏବଂ ଅଉ କେତେକଙ୍କୁ ଜୀବନ୍ମୃତ ଅବସ୍ଥାରେ ଛାଡ଼ିଲା । ବର୍ତ୍ତମାନ ବଙ୍ଗ ଦୁର୍ଭିକ୍ଷରେ ଜଡ଼ ହୋଇଥିବା କେତେକ ସେଠାରେ ଅଛନ୍ତି ।

ବିଶ୍ୱକବି ଡାକ୍ତର ରବୀନ୍ଦ୍ରନାଥ ଠାକୁର ଏହି ଅନୁଷ୍ଠାନକୁ ପରିଦର୍ଶନ କରିଥିଲେ । ୧୯୩୭ ମସିହା ଜାନୁୟାରି ମାସରେ ଭାରତର ମହାମାନ୍ୟ ବଡ଼ଲାଟ ଲର୍ଡ଼ ଲିନଲିଥଗୋ ସପତ୍ନୀକ ଏହି ଅନୁଷ୍ଠାନ ପରିଦର୍ଶନ କରି ଏକାନ୍ତ ପ୍ରୀତ ହୋଇଥିଲେ । ଯେଉଁମାନେ ଜଡ଼ବୁଦ୍ଧି ସେମାନେ ପ୍ରକୃତରେ ଅସହାୟ ଏବଂ ହତଭାଗ୍ୟ । ଘରେ ଓ ବାହାରେ ଗୁରୁଅଡ଼େ ସେମାନେ ଲଜ୍ଜିତ ଓ ଅପମାନିତ ହୁଅନ୍ତି । ତେଣୁ ସେମାନଙ୍କର ଶିକ୍ଷାପାଇଁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ଏକ ସାମାଜିକ କର୍ତ୍ତବ୍ୟ ଅଟେ । ବୋଧନା ସଦୃଶ ଅନୁଷ୍ଠାନ ସ୍ଥାନେ ସ୍ଥାନେ ପ୍ରତିଷ୍ଠିତ ହେବା ଉଚିତ । ତଦ୍ୱାରା ଦେଶର ଭାଗ୍ୟବିପର୍ଯ୍ୟୟ ଘଟିବ ନାହିଁ । ନାଗରିକମାନେ ପ୍ରଖର-ବୁଦ୍ଧିସମ୍ପନ୍ନ, ମେଧାବୀ ଓ ବ୍ୟୁତ୍ପନ୍ନ ହୋଇ ଦେଶର ମୁଖ ଉଜ୍ଜ୍ୱଳ କରିବେ ।

---

## ମୋଗା

ସୁଜଳା ସୁଫଳା ଶସ୍ୟଶ୍ୟାମଳା ଭାରତବର୍ଷ ଦେଶରେ ପଞ୍ଜାବ ଶସ୍ୟାଗାର । ତୁଷାର ପୁଷ୍ଟ, ଚିରପ୍ରବହମାନ ସିନ୍ଧୁନଦର ପଞ୍ଚଉପନଦୀ ଏହି ପ୍ରଦେଶର ସର୍ବାସଦୃଶ । ପଞ୍ଚ ଅମ୍ବୁର ପ୍ରବାହ ହେତୁରୁ ଏହି ପ୍ରଦେଶର ନାମକରଣ ଏପରି ହୋଇଅଛି । ଏହି ନଦୀମାନଙ୍କର ଜଳକୁ ମନୁଷ୍ୟର ବ୍ୟବହାରରେ ଲଗାଇବା ପାଇଁ ନାନା ଜଳସେଚନ ଯୋଜନାମାନ କାର୍ଯ୍ୟକାରୀ କରିହୋଇଅଛି । ତେଣୁ ପ୍ରଦେଶଟି

ଧନଶାଳୀ ଓ ଐଶ୍ୱର୍ଯ୍ୟଶାଳୀ । ପ୍ରଚୁର ଗହମ ଉତ୍ପନ୍ନ ହେବାରୁ ଲୋକଙ୍କର ଖାଦ୍ୟର ଅଭାବ ନାହିଁ । ତେଣୁ ସିନ୍ଧୁନଦ ଏହି ପ୍ରଦେଶର ବିଭବ ଏବଂ ଖାଦ୍ୟପ୍ରାଚୁର୍ଯ୍ୟର ମୂଳ କାରଣ । ଆର୍ଯ୍ୟଋଷିଗଣ ଏହି ନଦୀର କୂଳରେ ସର୍ବପ୍ରଥମେ ପଦାର୍ପଣ କରିଥିଲେ । ତେଣୁ ପଞ୍ଜାବର ଐତିହାସିକ ମହିମା ଓ ଖ୍ୟାତି ଉଣା ନୁହେଁ । ଆଜିକାଲି ଏହି ପ୍ରଦେଶରେ ନାନା ଅର୍ଥନୈତିକ ଓ ସାମାଜିକ ସଂସ୍କାର କରାହେଲାଣି । ଭାରତର ପ୍ରଗତିଶୀଳ ପ୍ରଦେଶମାନଙ୍କ ମଧ୍ୟରେ ଏହା ଅନ୍ୟତମ । ଶିକ୍ଷାଜଗତରେ ମଧ୍ୟ ଏହି ପ୍ରଦେଶରେ ନାନା ନୂତନ ଏବଂ ଆଧୁନିକ ତଥ୍ୟର ପରୀକ୍ଷା କରାହେଉଅଛି । ଭାରତର ଅନ୍ୟାନ୍ୟ ପ୍ରଦେଶର ଶିକ୍ଷକମାନେ ଶିଶୁଶିକ୍ଷାକୁ ସାଫଲ୍ୟମଣ୍ଡିତ କରିବାପାଇଁ ପଞ୍ଜାବ ଅନ୍ତର୍ଗତ ମୋଗାଗ୍ରାମର ନିର୍ଦ୍ଦେଶକୁ ସତୃଷ୍ଣ ନୟନରେ ଅପେକ୍ଷା କରିଥାନ୍ତି ।

**ମୋଗା**—କ୍ଷୁଦ୍ର ଗ୍ରାମଟିଏ—ଗହମକ୍ଷେତମାନଙ୍କଦ୍ୱାରା ଚାରିପାଖ ପରିବେଷ୍ଟିତ ପ୍ରାନ୍ତର ମଧ୍ୟରେ କ୍ଷୁଦ୍ର ବାଳକବାଳିକାଗଣ ଆନନ୍ଦରେ କ୍ରୀଡ଼ାରେ ରତ ଥାନ୍ତି । ଆଖପାଖରେ କେତେଗୁଡ଼ିଏ ଗୃହ ସୁସଜ୍ଜିତ ହୋଇ ଧାଡ଼ି ଧାଡ଼ି ଦଣ୍ଡାୟମାନ । ଏହି ଗ୍ରାମରେ ବିଦ୍ୟାଳୟଟି ଅବସ୍ଥିତ । ଅସଂଖ୍ୟ ଛାତ୍ର ରାସ୍ତାପାଖରେ କ୍ରୀଡ଼ା କରୁଥାନ୍ତି । କୌଣସି ଆଗନ୍ତୁକ ଆସିଲେ ସେମାନେ ପ୍ରାଚ୍ୟ ରୀତିରେ ଅଭିବାଦନ କରନ୍ତି । ଏହି ଛାତ୍ରମାନଙ୍କର ଆନ୍ତରିକ ନମ୍ରତା ଓ ଭଦ୍ରତା ତଥା ବାହ୍ୟିକ ପରିଷ୍କୃତି ଦେଖିଲେ ମନେହୁଏ ଯେ, ଏମାନେ ଆମଗ୍ରାମର ବାଳକବାଳିକା-ମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ଏହି ଛାତ୍ରମାନେ ସବୁବେଳେ ନାନାକାମରେ ବ୍ୟସ୍ତଥାନ୍ତି ସେମାନଙ୍କର ବାଳକୋଚିତ ଔତ୍ସୁକ୍ୟ ଏବଂ ସ୍ଫୁର୍ତ୍ତି ସେମାନଙ୍କର କାମ-ମଧ୍ୟରେ ଫୁଟି ଉଠୁଥାଏ । ଉଦ୍ୟାନକର୍ମ, ଗାଈଆବୁଣା, ଦଉଡ଼ିବଳା,

ଇଟାତିଆରି, ବାହୁବାନ୍ଧିବା, ଖାଦ୍ୟରାନ୍ଧିବା, ଘରତିଆରି କରିବା, କୃଷିକାର୍ଯ୍ୟ, ଦୋକାନ କରିବା, ଜଳସେଚନ କାମ କରିବା, ଦାତବ୍ୟ ଚିକିତ୍ସାଳୟ ଚଳାଇବା, ଗ୍ରାମୋନ୍ନତି କରିବା ଇତ୍ୟାଦି ପ୍ରୋଜେକ୍ଟ (Project) କରି ଶିକ୍ଷା କରନ୍ତି । ପ୍ରୋଜେକ୍ଟ ପ୍ରଣାଳୀ ଏଠାରେ ପରୀକ୍ଷିତ ହୁଏ ଏବଂ କାର୍ଯ୍ୟରେ ପରିଣତ କରାଯାଏ । ଯେଉଁ ପ୍ରଣାଳୀଦ୍ୱାରା ପ୍ରାକୃତିକ ଅବସ୍ଥାରେ ଜୀବନର ସମସ୍ୟାମାନଙ୍କର ସ୍ୱାଭାବିକ ସମାଧାନ କରି ଶିକ୍ଷା କରାଯାଏ ତାହାକୁ ପ୍ରୋଜେକ୍ଟ ପ୍ରଣାଳୀ କହନ୍ତି । କାର୍ଯ୍ୟ ସହିତ ସମନ୍ୱୟ ରଖି ପୁସ୍ତକପାଠ କରାଯାଏ । ଉଦାହରଣ ସ୍ୱରୂପ, ଛାତ୍ରମାନେ ଦୋକାନ କରିବା ପ୍ରୋଜେକ୍ଟ (a shop project) କରି ପାରନ୍ତି । ଏହି ଦୋକାନରେ ଛାତ୍ରମାନଙ୍କର ହାତକାମ, ଚାଷ, ଉଦ୍ୟାନଜାତ ପନିପରିବା ଇତ୍ୟାଦି ବିକ୍ରୟାର୍ଥ ଗଚ୍ଛିତ ରହିବ । ପାଳି କରି ଛାତ୍ରମାନେ ବିକ୍ରୟ କରିବେ । ପଦାର୍ଥମାନଙ୍କୁ ପ୍ରଥମେ ଓଜନ କରିବେ ଏବଂ ବଜାରର ଦର ଅନୁଯାୟୀ ସେମାନଙ୍କର ଦର ଧାର୍ଯ୍ୟ କରିବେ । ଦୋକାନଟି ଭଲଭାବରେ ଚଳାଇବା ପାଇଁ ଛାତ୍ରମାନଙ୍କୁ ନିମ୍ନଲିଖିତ ବିଷୟ ଜାଣିବାକୁ ହେବ ।

୧ । ବଜାରରେ ଦୋକାନ କିପରି ପରିଚାଳିତ ହୁଏ ?

୨ । କେଉଁ ଦ୍ରବ୍ୟମାନଙ୍କର ଚାହିଦା ବେଶୀ ଓ ବାହିଁକି ?

୩ । ଜିନିଷମାନଙ୍କୁ ମୂଷା, ପୋକ ପ୍ରଭୃତିଙ୍କ ଦାଉରୁ କିପରି ସାଇତି ରଖିବାକୁ ହୁଏ ?

୪ । ଜିନିଷମାନଙ୍କର ଦର ଧାର୍ଯ୍ୟ କିପରି କରାଯାଏ ?

୫ । ଲାଭ କିପରି କଷାଯାଏ ଏବଂ ଦୋକାନ ହିସାବ କିପରି ରଖିବାକୁ ହୁଏ ?

୬ । କେଉଁ ସ୍ଥାନରୁ ପଦାର୍ଥମାନ କିଣିଲେ ଲାଭଜନକ ହେବ ?

୭ । ଗ୍ରାହକମାନଙ୍କ ପ୍ରତି କପରି ବ୍ୟବହାର କରିବାକୁ ହେବ ?

୮ । ଦୋକାନରେ ଦ୍ରବ୍ୟମାନ କପରି ସଜାଇ ରଖିବାକୁ ହୁଏ ?

୯ । ଉଚକା ପରିବାର ଗ୍ରାହକ ବେଶୀ, କାହିଁକି ?

୧୦ । ଆଜିକାଲି ପଇସା ବଦଳରେ ସଉଦା ଦିଆଯାଉଛି । ପୂର୍ବକାଳରେ ( ବୈଦିକ ଯୁଗରେ, ରାମ ରାଜ୍ୟରେ କିମ୍ବା ମୋଗଲ ରାଜତ୍ୱରେ ) କଣାବିକା କପରି ହେଉଥିଲା ?

ଏହିପରି ପ୍ରଶ୍ନମାନଙ୍କର ସମାଧାନ କରି ଏବଂ ଦୋକାନରେ କଣାବିକା କରି ଛାତ୍ରମାନେ ଅଜ୍ଞେପରେ ଗଣିତ, ଭୂଗୋଳ, ସ୍ୱାସ୍ଥ୍ୟରକ୍ଷା, ଇତିହାସ ଓ ସାଧାରଣ ସାମାଜିକ ବିଜ୍ଞାନ ଶିକ୍ଷା କରିବେ । ଦରକରା ଓ ଓଜନ ଯନ୍ତ୍ର କାରବାର କରି ଦୈନନ୍ଦିନ ଜୀବନ ପାଇଁ ପ୍ରସ୍ତୁତ ହେବେ । ଶୁଭଙ୍କରୀ ଶିକ୍ଷା କରିବା ପାଇଁ ଅର୍ଥାତ୍ ଶୁଭଙ୍କରୀ ସୂତ୍ରରେ ଉପନୀତ ହେବାପାଇଁ ଏହାହିଁ ପ୍ରକୃଷ୍ଟ ପ୍ରଣାଳୀ । ରସିଦ, ଅନ୍ୟାନ୍ୟ ହିସାବ ଏବଂ ଆୟବ୍ୟୟ ଲେଖିବାଦ୍ୱାରା ଲିଖନ ଶିକ୍ଷା କରିବେ । ବାସ୍ତବରେ ନିଜେ କାମ କରି ନିଜେ ନିଜର ଶିକ୍ଷଣୀୟ ବିଷୟମାନ ଆବିଷ୍କାର କରି ପାରିବେ । ତେଣୁ ଛାତ୍ରମାନେ ପ୍ରକୃତରେ ଶିକ୍ଷିତ ହେବେ । ଏହିପରି ଗୋଟାଏ ଗୋଟାଏ ପ୍ରୋଜେକ୍ଟ ଅନୁସାରେ ଛାତ୍ରମାନେ ପାଠ୍ୟତାଲିକାର ବିଭିନ୍ନ ବିଷୟମାନ ସ୍ୱାଭାବିକ ଓ ପ୍ରୀତିପ୍ରଦ ଉପାୟରେ ଶିକ୍ଷାକରି ପାରିବେ । ଆଗରୁ ଯାହା କ୍ଳାନ୍ତିଜନକ ଏବଂ ନୀରସ ବୋଧ ହେଉଥିଲା ବର୍ତ୍ତମାନ ତାହା ସୁନ୍ଦର ଓ ପ୍ରୀତିପ୍ରଦ ଲାଗିବ । କାର୍ଯ୍ୟକରି ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହୋଇ ପ୍ରାକୃତିକ ଅବସ୍ଥାରେ ଜୀବନର ସମସ୍ୟାମାନ ସମାଧାନକରି ଶିକ୍ଷା କରିବା ପ୍ରୋଜେକ୍ଟ ପ୍ରଣାଳୀର ମୂଳକଥା ଅଟେ ।

**ଉଦ୍ୟାନ** ବିଦ୍ୟାଳୟର ଗୌରବର ପରିଚାୟକ । ଏହା ଛାତ୍ରମାନଙ୍କର ସୌନ୍ଦର୍ଯ୍ୟ ଜ୍ଞାନର ଅଭିବୃଦ୍ଧି କରାଇବା ସଙ୍ଗେ ସଙ୍ଗେ ପଦାର୍ଥବିଜ୍ଞାନ, ପ୍ରକୃତିପାଠ, କୃଷି ଇତ୍ୟାଦି ଶିକ୍ଷାଦେବାରେ ବିଶେଷ ସାହାଯ୍ୟକରେ । ଉଦ୍ୟାନରେ ଜନ୍ମୁଥିବା ବିଭିନ୍ନ ଉଦ୍ଭିଦ, ଫୁଲ, ଫଳ ପତ୍ର ପର୍ଯ୍ୟବେକ୍ଷଣ କରାଯାଇପାରେ । କିନ୍ତୁ ଆଜିକାଲି ଆମ୍ଭମାନଙ୍କର ବିଦ୍ୟାଳୟମାନଙ୍କର ଉଦ୍ୟାନର ଶୋଚନୀୟ ଅବସ୍ଥା ତଥା ଉଦ୍ୟାନକର୍ମ କରିବାକୁ ଛାତ୍ରମାନଙ୍କର ବିମୁଖତା ଦେଖିଲେ ମନରେ ଘୋର ଦୁଃଖ ଜନ୍ମେ । ଅଥଚ ମୋଗାର ବାତାବରଣ ଏପରି ଯେ ସେଠାକାର ପ୍ରତ୍ୟେକ ଛାତ୍ର ଉଦ୍ୟାନକର୍ମରେ ବିଶେଷ ଆଗ୍ରହ ପ୍ରକାଶ କରେ । ସେମାନେ କୃଷକପରି ଖଣ୍ଡେ ଗାମୁଛା ପିନ୍ଧି ଏବଂ ମୁଣ୍ଡରେ ଗୋଟାଏ ପଗଡ଼ିବାନ୍ଧି ହଳକରିବା ଠାରୁ ଆରମ୍ଭ କରି ଯାବତୀୟ କୃଷିକର୍ମ କରି ସେଥିରେ ବୈଶିଷ୍ଟ୍ୟ ଅର୍ଜ୍ଜନ କରନ୍ତି । ଏହି କୃଷିକାମ କରି ସେମାନେ ଭୂଗୋଳ, ଇତିହାସ, ପ୍ରକୃତିପାଠ ଓ ଗଣିତ ଶିକ୍ଷା କରିପାରନ୍ତି । ସେମାନେ ମଧ୍ୟ ପରିଶ୍ରମର ମର୍ଯ୍ୟାଦା ବୁଝି ଦୈନିକ ଦୈହିକ ପରିଶ୍ରମ କରିବାକୁ କୁଣ୍ଠା ବୋଧ କରନ୍ତି ନାହିଁ । ତେଣୁ ଏପ୍ରକାର ଶିକ୍ଷା ଛାତ୍ରକୁ ମାନବ ଜୀବନ ପାଇଁ ପ୍ରସ୍ତୁତ କରେ ।

ଏହି ବିଦ୍ୟାଳୟର ବିଶେଷତ୍ୱ ଏହି ଯେ, ପ୍ରାକୃତିକ ଅବସ୍ଥାରେ ଏବଂ ମୁକ୍ତ ବାୟୁମଣ୍ଡଳରେ ସମସ୍ତ ବିଷୟ ଶିକ୍ଷା ଦିଆଯାଏ । ପ୍ରାକୃତିକ ଅବସ୍ଥାର ଅର୍ଥ ଏହି ଯେ, ଯେଉଁ କାମଟି ଯେପରି ଭାବରେ ଲୋକେ କରିଥାନ୍ତି, ଛାତ୍ରମାନେ ସେହି କାମଟିକୁ ଠିକ୍ ସେହିପରି ଭାବରେ କରନ୍ତି । ଉକ୍ତ କାମର ଅନୁକରଣ ବିଦ୍ୟାଳୟରେ କରାଯାଏ ନାହିଁ । ବରଂ ଅବିକଳ ସେହି କାମଟି କରିବାକୁ ସମସ୍ତ ସୁବିଧା ଦିଆଯାଏ । ତେଣୁ ଏଠାରେ ଶିକ୍ଷା ବାସ୍ତବ ହୋଇଅଛି । ଆମ୍ଭମାନଙ୍କ ବିଦ୍ୟାଳୟରେ ଶିକ୍ଷା "ପୋଥି ବାଇଗଣ" ସଦୃଶ । ବାସ୍ତବ

ଅବସ୍ଥା ସହିତ ଏହାର କୌଣସି ସମ୍ପର୍କ ନାହିଁ । କିନ୍ତୁ ମୋଗାରେ ଶିକ୍ଷା "ବାକ୍ୟ ବାଇଗଣ" ଅଟେ । ଅଧିକନ୍ତୁ ପଠନ ଗଳ୍ପଚ୍ଛଳରେ ବାକ୍ୟ ସାହାଯ୍ୟରେ ଶିକ୍ଷା ଦିଆଯାଏ । ଶବ୍ଦ ସୁସ୍ପଷ୍ଟ ଭାବରେ ଉଚ୍ଚାରଣ କରିବା ପାଇଁ ପିଲାମାନଙ୍କୁ ଶିକ୍ଷା ଦିଆଯାଏ । ପିଲାମାନଙ୍କର ଅନୁଭୂତିକୁ କ୍ଷୁଦ୍ର ବାକ୍ୟରେ ଏବଂ ଅନୁଚ୍ଛେଦରେ ପ୍ରକାଶ କରାଯାଏ । ଏହା ଶ୍ରେଣୀରେ ଆଲୋଚନା କରାଯାଏ ଏବଂ ଛାତ୍ରମାନେ ଏହା ପାଠ କରନ୍ତି । ଗୋଟିଏ ଗୋଟିଏ ଶବ୍ଦକୁ ନେଇ ପ୍ରୋଜେକ୍ଟ ମଧ୍ୟ କରାଯାଏ । ବାକ୍ୟ ଏବଂ ବାକ୍ୟାଂଶର ଆଲୋଚନା କରି ସାରି ଗୋଟିଏ ଗୋଟିଏ ଶବ୍ଦର ଆଲୋଚନା କରାଯାଏ । ଏହି ପ୍ରଣାଳୀର ପର୍ଯ୍ୟବେକ୍ଷଣକାରୀମାନେ ମତ ଦିଅନ୍ତି ଯେ, ଅନ୍ୟାନ୍ୟ ପ୍ରଣାଳୀରେ ପଠନ ଶିକ୍ଷା କରିବାକୁ ଯେତେ ସମୟ ଲାଗେ ଏହି ପ୍ରଣାଳୀ ସାହାଯ୍ୟରେ ତହିଁର ପ୍ରାୟ ଅର୍ଦ୍ଧେକ ସମୟରେ ପଠନ ଶିକ୍ଷା କରାଯାଇପାରେ ।

ଭବିଷ୍ୟତ ଜୀବନରେ ମନୁଷ୍ୟକୁ ଯେଉଁ ସବୁ କାମ କରିବାକୁ ପଡ଼େ, ଛାତ୍ରମାନେ ତାହା କରିବାରେ ଅଭ୍ୟସ୍ତ ହୁଅନ୍ତି । ଛୋଟ ଛୋଟ ମରାମତି କାମ—ଯେଉଁଥିପାଇଁ ଆମ୍ଭମାନଙ୍କୁ ପରମୁଖାପେକ୍ଷୀ ହେବାକୁ ପଡ଼େ ତାହା ଏଠାରେ ଶିକ୍ଷା ଦିଆଯାଏ । ବର୍ଷା ଜଳରେ ଗୋଟିଏ ମାଟିକାନ୍ଥ ଧୋଇଯାଇଛି । ଏ ପ୍ରକାର କାମ ସାଧାରଣତଃ ଗ୍ରାମରେ ବର୍ଷା ଋତୁରେ କାମ କରିବାକୁ ପଡ଼େ । ତାହାକୁ ମରାମତି କରିବାକୁ ପିଲାମାନେ ଶିଖନ୍ତି । ଜାମା ବା ଲୁଗା ଚିରିଗଲେ, ଜାମାରୁ ବୋତାମ ଖସିଗଲେ, ଛତା ତାର ଖସିଗଲେ, ଛତାଲୁଗା ଛତା ତାରରୁ ବାହାରି ଗଲେ, ବହି ବା ଖାତାରୁ ମଲାଟ ବାହାରି ଗଲେ ଇତ୍ୟାଦି ସାନ ସାନ ମରାମତି କାମ ପାଇଁ ଆମ୍ଭମାନଙ୍କୁ ଅନ୍ୟର ଦ୍ୱାରସ୍ଥ ହେବାକୁ ପଡ଼ିଥାଏ । ସେଥିପାଇଁ ଏ ସବୁ ବିଷୟରେ ପିଲାମାନଙ୍କୁ ତାଲିମ କରାଯାଇ ଆତ୍ମନିର୍ଭରଶୀଳ ନାଗରିକ ପ୍ରସ୍ତୁତ କରିବା ପାଇଁ ଉଦ୍ୟମ କରାଯାଏ ।

ମୋଟ ଉପରେ ମୋଗା ଶିକ୍ଷା ଯୋଜନା ଏକ ସୁଚିନ୍ତିତ ଅଭିନବ ଶିକ୍ଷା ପ୍ରଣାଳୀ ଅଟେ । ପଞ୍ଜାବରେ ଏହି ପ୍ରୋଜେକ୍ଟ ପ୍ରଣାଳୀ ଖୁବ୍ ପ୍ରସାର ଲାଭ କରିଅଛି । ସର୍ବତ୍ର ଏହା ପ୍ରଚଳିତ ହେଲାଣି ।

---

## ଶାନ୍ତି-ନିକେତନ

ବିଶ୍ୱକବି ରବୀନ୍ଦ୍ର ଜଣେ ଚିନ୍ତାଶୀଳ ଭାବୁକ ଥିଲେ । ତାଙ୍କର ଚିନ୍ତାଧାରାରେ ଭାରତୀୟ ଆଦର୍ଶ, ଭାରତୀୟ ଦର୍ଶନ, କୃଷ୍ଟି ଓ ସଂସ୍କୃତ ପୂର୍ଣ୍ଣଭାବରେ ପ୍ରତିଫଳିତ ହୋଇଥିଲା । ସେ ପ୍ରାଚ୍ୟ ଦର୍ଶନର ସୂକ୍ଷ୍ମ ଆଦର୍ଶକୁ ଅତି ସରଳ ଏବଂ ପ୍ରାଞ୍ଜଳଭାବରେ ତାଙ୍କ କବିତାରେ ଫୁଟାଇ ପାରିଥିଲେ ଏବଂ ତାହା ଜଗତ ଆଗରେ ସ୍ଥାପନ କରିଥିଲେ । ତାଙ୍କର ପ୍ରତି ରକ୍ତବିନ୍ଦୁରେ ପ୍ରାଚ୍ୟ ଆଦର୍ଶ ଖେଳିବୁଲୁଥିଲା । ତେଣୁ ତାଙ୍କର ଲେଖା ଓ କାର୍ଯ୍ୟ ପ୍ରାଚ୍ୟ ଆଦର୍ଶର ପ୍ରତୀକ ।

ସେ ଏହି ଭାବଧାରାରେ ଅନୁପ୍ରାଣିତ ହୋଇ ଯେଉଁ ବିଦ୍ୟାଳୟ ସ୍ଥାପନ କରିଥିଲେ ତାହା ଶାନ୍ତି-ନିକେତନ ନାମରେ ଅଭିହିତ । ଭାରତୀୟ ପ୍ରାଚୀନ ଆଦର୍ଶ ଓ କୃଷ୍ଟି ଗ୍ରନ୍ଥରେ ଭାରତୀୟ ଜୀବନ ସହିତ ସାମଞ୍ଜସ୍ୟ ରକ୍ଷି ଏହି ବିଦ୍ୟାଳୟ ଗଠିତ ହେଲା । ଶାନ୍ତି-ନିକେତନ ଶାନ୍ତିର ନିଳୟ । ଏହା କୋଳାହଳମୟୀ କଲିକତା ନଗରୀଠାରୁ ପ୍ରାୟ ୪୦ ମାଇଲ ଦୂରରେ ବିଜନ ପ୍ରାନ୍ତର ମଧ୍ୟରେ ବୋଲପୁରଠାରେ ଅବସ୍ଥିତ । ବିଜନତା ଭଗବତ୍ ଉପଲବ୍ଧି ପାଇଁ ଏକାନ୍ତ ଅନୁକୂଳ । ଭାରତୀୟ ମନ ସର୍ବଦା ଭଗବତ୍ ପ୍ରାପ୍ତି ପାଇଁ ପ୍ରଧାବିତ । ତେଣୁ ବିଶ୍ୱକବି ଏହି ନିର୍ଜନ ସ୍ଥାନରେ ତାଙ୍କର ସାଧନାପୀଠ ସ୍ଥିରକଲେ । ସାଧକ, କବି, ଭାବୁକ ଓ ଦାର୍ଶନିକ ଗଭୀର ଚିନ୍ତା ଓ ଗବେଷଣା ପାଇଁ ସର୍ବଦା ବିଜନତାର ପ୍ରୟାସୀ ହୋଇଥାନ୍ତି ।

ରବୀନ୍ଦ୍ରନାଥ ଆଧୁନିକ ସମାଜର ଦୁରବସ୍ଥା ଦେଖି ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଲେ । ସଙ୍କୀର୍ଣ୍ଣତା, ଈର୍ଷା ଓ ସ୍ୱାର୍ଥପରତା ସମାଜକୁ ଖଣ୍ଡବିଖଣ୍ଡିତ କରିଦେଲା । କିନ୍ତୁ ବିଶ୍ୱକବି ଭାବିଲେ ଯେ, ଶିକ୍ଷାଦ୍ୱାରା ଏ ସବୁ ଦୋଷର ନିରାକରଣ କରାଯାଇ ପାରେ । ଶିକ୍ଷା ମନୁଷ୍ୟର ଚକ୍ଷୁ ଉନ୍ମୀଳିତ କରାଇବ । ଶିକ୍ଷିତ ମାନବ କୁସଂସ୍କାର ଓ ଅନ୍ଧବିଶ୍ୱାସର ବଶୀଭୂତ ନ ହୋଇ ଅଧିକ ବିଚାରଶୀଳ ହେବ । ସେ ବିବେକର ଡାକ ଶୁଣିବ । ଫଳରେ ସମାଜର ଉନ୍ନତି ସଂଘଟିତ ହେବ । ତେବେ ଶିକ୍ଷା କି ପ୍ରକାର ହେବା ଉଚିତ ? ତାଙ୍କ ମତରେ ଶିକ୍ଷା ଏପରି ହେବ ଯଦ୍ଦ୍ୱାରା ପ୍ରେମ, ତ୍ୟାଗ, ସ୍ୱାଧୀନଭାବ ଓ ସମତା ଅନ୍ତଃକରଣରେ ସ୍ଥାପିତ ହୋଇପାରିବ । ଶିକ୍ଷାଦ୍ୱାରା ଆଧ୍ୟାତ୍ମିକ ଓ ମାନସିକ ଉନ୍ନତି ସାଧିତ ହେବ । ଭଗବାନଙ୍କ ସତ୍ତା ଅନୁଭବ କରିବା ବିଦ୍ୟାଳୟର ପ୍ରଧାନ ଲକ୍ଷ୍ୟ ହେବ । ସେଥିପାଇଁ ରବୀନ୍ଦ୍ରନାଥ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ପୂର୍ଣ୍ଣ ସୌହାର୍ଦ୍ଦ୍ୟ ରହିବାକୁ ଚାହୁଁଥିଲେ । ସେ କହୁଥିଲେ ଯେ, ବିଦ୍ୟାଳୟ ଏକାଧାରରେ ଗୃହ ଓ ପୂଜାପୀଠ ହେବା ଉଚିତ । ଶିକ୍ଷା ଓ ପୂଜା ଏକସଙ୍ଗରେ ଚାଲିବା ଉଚିତ ।

ଶାନ୍ତି-ନିକେତନର ବାୟୁମଣ୍ଡଳ ଆଶ୍ରମଶିକ୍ଷା—ଭକ୍ତିମାର୍ଗରେ ବିଦ୍ୟାଶିକ୍ଷା ପାଇଁ ଏକାନ୍ତ ଅନୁକୂଳ । ଏହା ତରୁଲତାମାନଙ୍କଦ୍ୱାରା ସୁଶୋଭିତ । ଏଠାରେ ଯଥେଷ୍ଟ ସ୍ଥାନ ଅଛି ; ମୁକ୍ତବାୟୁ ଓ ସୂର୍ଯ୍ୟାଲୋକ ଅବାଧରେ ପଡ଼ିପାରୁଅଛି । ପିଲାମାନେ ବାହାରେ, ବାରଣ୍ଡାରେ ଏବଂ ଗଛମୂଳତଳେ ଅଧ୍ୟୟନ କରନ୍ତି । ତେଣୁ ସ୍ଥାନଟି ମାନସିକ ଉନ୍ନତି ପାଇଁ ଯେପରି ଶାରୀରିକ ଉନ୍ନତି ପାଇଁ ସେହିପରି ଅନୁକୂଳ । ଗୃହଗୁଡ଼ିକ ବେଶ୍ ଆଲୋକିତ । ତେଣୁ ଛାତ୍ରମାନଙ୍କର ଦୃଷ୍ଟିଶକ୍ତି ତଥା ସାଧାରଣ ସ୍ୱାସ୍ଥ୍ୟରେ କୌଣସି ବାଧା ଉପୁଜେ ନାହିଁ । ଶାନ୍ତି-

ନିକେତନରେ ଅତି କ୍ଷୁଦ୍ର ଶିଶୁଠାରୁ ଆରମ୍ଭ କରି ବୟୋଧିକ ବାଳକ ପର୍ଯ୍ୟନ୍ତ ସମସ୍ତେ ପଢ଼ିପାରିବେ, ଅର୍ଥାତ୍ ପ୍ରାଥମିକଶିକ୍ଷାଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷା ଦେବାର ବ୍ୟବସ୍ଥା ଅଛି । ତେଣୁ ଏହା ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ—ବିଶ୍ୱଭାରତୀ ନାମରେ ଅଭିହିତ । "ବିଶ୍ୱଭାରତୀ" ଏହି ନାମ ତଥା ବିଶ୍ୱବିଦ୍ୟାଳୟର କାର୍ଯ୍ୟପନ୍ଥାରୁ ଏହା ସ୍ପଷ୍ଟ ସୂଚିତ ହୁଏ ଯେ, ଏହା କୌଣସି ସାମ୍ପ୍ରଦାୟିକ ଅନୁଷ୍ଠାନ ନୁହେଁ । ଏଠାରେ ରବୀନ୍ଦ୍ରନାଥଙ୍କର ଆନ୍ତର୍ଜାତିକ ଭାବ ଓ ପ୍ରେରଣା ପ୍ରକାଶିତ । ନାନା ଦେଶବିଦେଶର ଶିକ୍ଷାର୍ଥୀ ବର୍ଣ୍ଣ, ଦେଶ ଓ ସମ୍ପ୍ରଦାୟ ନିର୍ବିଶେଷରେ ଏଠାରେ ପଢ଼ନ୍ତି । ଅଧ୍ୟାପକଗଣ ବିଭିନ୍ନ ଦେଶରୁ ଯୋଗ୍ୟତା ଦୃଷ୍ଟିରେ ନିଯୁକ୍ତ ହୋଇଅଛନ୍ତି । କେତେକ ପ୍ରଦେଶରେ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷକ ନିଯୁକ୍ତବେଳେ ସେହି ପ୍ରଦେଶର ବେକାର ସମସ୍ୟା ଦୂର କରିବା ବିଷୟ ବିଚାର କରାଯାଏ । କିନ୍ତୁ ଏତଦ୍ୱାରା ଉକ୍ତ ପ୍ରଦେଶର ଯେ କି ଘୋର କ୍ଷତି ହୁଏ ତାହା ବର୍ଣ୍ଣନାତୀତ । ପ୍ରଦେଶର ସଂକୀର୍ଣ୍ଣ ସ୍ୱାର୍ଥପ୍ରତି ଦୃଷ୍ଟିଦେବାକୁ ଯାଇ ଉଜ୍ଜ୍ୱଳ ଭବିଷ୍ୟତରେ କାଳିମା ଲଗାଇବାକୁ ହୁଏ । ପ୍ରତିଭାର କୌଣସି ଗୋଟିଏ ଗୋଷ୍ଠି ବା ଦେଶ ନ ଥାଏ । ଏହା ଆନ୍ତର୍ଜାତିକ; ତେଣୁ ଏହାର ବିକାଶ ପାଇଁ ଯେଉଁମାନେ ସହାୟକରୂପେ ନିଯୁକ୍ତ ହେବେ ସେମାନେ ପ୍ରତିଭାସମ୍ପନ୍ନ ହେବା ଉଚିତ । ଏ ପ୍ରକାର ଉଦାରନୀତିରେ ପରିଚାଳିତ ହେବାରୁ ଚୀନ, ଜର୍ମାନୀ ପ୍ରଭୃତି ଦେଶବିଦେଶର ସୁଯୋଗ୍ୟ ପଣ୍ଡିତମାନେ ଏଠାରେ ନିଯୁକ୍ତ ହୋଇଅଛନ୍ତି । ସଙ୍ଗୀତ, ସାହିତ୍ୟ, ଶିଳ୍ପବିଦ୍ୟା ପ୍ରଭୃତି ସୂକ୍ଷ୍ମକଳାର ଆଲୋଚନା ଏଠାରେ ବିଶେଷଭାବରେ କରାଯାଏ ଏବଂ ଛାତ୍ରମାନେ ଏହି ସୂକ୍ଷ୍ମକଳାରେ ନୈପୁଣ୍ୟ ଲାଭ କରିବା ପାଇଁ ବିଭିନ୍ନ ପ୍ରଦେଶରୁ ତଥା ବିଦେଶରୁ ଏଠାକୁ ପ୍ରେରିତ ହୁଅନ୍ତି । ଛାତ୍ରମାନେ କବିତା ଓ ସଙ୍ଗୀତ ରଚନା କରି

ଆତ୍ମପ୍ରକାଶ କରିବା ପାଇଁ ଉତ୍ସାହିତ ହୁଅନ୍ତି । ସେମାନଙ୍କର ଅନେକଗୁଡ଼ିଏ ହାତଲେଖା ପତ୍ରିକା ଥାଏ । ସେଥିରେ ସେମାନଙ୍କର ଲେଖା ପ୍ରକାଶିତ ହୁଏ ।

ଏଠାରେ ଛାତ୍ରଛାତ୍ରୀ ଏକତ୍ର ଅଧ୍ୟୟନ କରନ୍ତି । ସେମାନେ ସୂର୍ଯ୍ୟୋଦୟ ପୂର୍ବରୁ ଉଦ୍ୟାନସ୍ଥ ପକ୍ଷିଗଣ ସଦୃଶ ଉଠିପଡ଼ନ୍ତି । ସେମାନେ ଆଶ୍ରମର ଏକପାର୍ଶ୍ୱରୁ ଅପର ପାର୍ଶ୍ୱ ପର୍ଯ୍ୟନ୍ତ ସ୍ତୋତ୍ର ପାଠ କରି ବୁଲନ୍ତି । ପ୍ରତ୍ୟୁଷର ନିସ୍ତବ୍ଧତା ମଧ୍ୟରେ ଛାତ୍ରମାନଙ୍କର ସାଙ୍ଗୀତିକ ସ୍ୱର ଓ ତତ୍ସହିତ ସେମାନଙ୍କର ଆନନ୍ଦ ଏବଂ ଭକ୍ତି ମନରେ ଶାନ୍ତି ଆଣିଦିଏ । କିଛିକ୍ଷଣ ପରେ ପ୍ରତ୍ୟେକ ଛାତ୍ର ଖଣ୍ଡିଏ ଆସନ ଉପରେ ନିଜ ସ୍ଥାନରେ ଏକୁଟିଆ ବସି ଧ୍ୟାନମଗ୍ନ ରହେ । ତତ୍ପରେ ବିଦ୍ୟାଳୟର କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ସମସ୍ତ ଛାତ୍ର ମିଳି ସ୍ତୋତ୍ରପାଠ କରନ୍ତି । ଛାତ୍ରମାନେ ଗଛ ଛାଇରେ ମୁକ୍ତ ଆକାଶତଳେ ଶିକ୍ଷକଙ୍କ ପାଖରେ ବସି ପାଠ ପଢ଼ନ୍ତି । ସ୍କୁଲ୍ ଶ୍ରେଣୀ ଗୃହମାନ ନ ଥାଏ କିମ୍ବା ପ୍ରତ୍ୟେକ ଶ୍ରେଣୀରେ ଖୁବ୍ ବେଶୀ ପିଲା ନ ଥାନ୍ତି । ଆଠ କିମ୍ବା ଦଶ ଜଣ ପିଲା ଏକତ୍ର ହୋଇ ପଢ଼ନ୍ତି । ଅଳ୍ପ ସଂଖ୍ୟକ ପାଠ୍ୟପୁସ୍ତକ ବ୍ୟବହୃତ ହୁଏ । କଥୋପକଥନ ଛଳରେ ଅଧିକାଂଶ ଶିକ୍ଷା କାର୍ଯ୍ୟ କରାହୁଏ । ଏହିପରି ସାଢ଼େ ଦଶଟା ପର୍ଯ୍ୟନ୍ତ ପିଲାମାନେ ପଢ଼ନ୍ତି । ତତ୍ପରେ ସେମାନେ ସ୍ନାନ କରି ଭୋଜନ କରନ୍ତି । ପୁଣି ଦିନ ଦୁଇଟା ବେଳେ ପାଠପଢ଼ା ଆରମ୍ଭ ହୁଏ । ଏଥର ଅଧିକ ପୁସ୍ତକ-ପାଠ ହୁଏ ନାହିଁ କହିଲେ ଚଳେ । ପିଲାମାନେ ହାତକାମ କରି ହସ୍ତ, ଚକ୍ଷୁ ଓ ମନକୁ ତାଲିମ କରିବାର ଅବସର ପାଆନ୍ତି । ବଢ଼େଇ କାମ, ସୂତାକଟା, ଲୁଗାବୁଣା, ଚିତ୍ରକାମ, ଗୀତଗାଇବା ଇତ୍ୟାଦି କାମରେ ଉପର ଓଳି କଟିଯାଏ । ଚାରିଟା ବେଳେ ସ୍କୁଲ କାମ ସରିଯାଏ ।

ଉକ୍ତ ପ୍ରାନ୍ତରରେ ପିଲାମାନେ ଖୁବ୍ ଖେଳନ୍ତି । ପାଞ୍ଚଟା ବେଳେ ପୁଣି ସେମାନେ ଫେରି ଆସନ୍ତି । ସନ୍ଧ୍ୟାବେଳେ ସେମାନେ ନୀରବରେ ଧ୍ୟାନ କରନ୍ତି । ରାତିରେ ଗଳ୍ପକଥନ ହୁଏ । କ୍ଷୁଦ୍ର ନାଟିକା ଅଭିନୀତ ହୁଏ । ଗୁରୁଦେବଙ୍କ ରଚିତ ସଙ୍ଗୀତମାନ ଆବୃତ୍ତି କରାହୁଏ । ନଅଟା ବେଳକୁ ଛାତ୍ରମାନେ ପ୍ରଫୁଲ୍ଲମନରେ ଶୋଇବାକୁ ଯାଆନ୍ତି । ସମସ୍ତ ଛାତ୍ର ଛାତ୍ରାବାସରେ ରହନ୍ତି । ଜାତିଗତ ଓ ଧର୍ମଗତ ପାର୍ଥକ୍ୟ ଭୁଲିଯାଇ ଏକତ୍ର ପାନଭୋଜନ କରନ୍ତି । କେତେଗୁଡ଼ିଏ କୁଟୀରରେ ଦଳ ଦଳ ଛାତ୍ର ରହନ୍ତି । ଛାତ୍ରମାନେ ନିଜର କାମ ନିଜେ କରନ୍ତି, ଯଥା—ଗାଧୋଇବା ପାଇଁ କୂଅରୁ ପାଣିକାଢ଼ିବା, ରହିବା ଘରକୁ ସଫା କରିବା ଇତ୍ୟାଦି ।

ଛାତ୍ରମାନଙ୍କର ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟ ଉପରେ ଦିଆଗଲା । ଦିନସାରା ସେମାନଙ୍କର ଆନନ୍ଦର ସୀମା ନ ଥାଏ । ବିଶିଷ୍ଟ ଶିକ୍ଷାବିତ୍‌ମାନେ ମତ ଦିଅନ୍ତି ଯେ ଭାରତର ଅନ୍ୟ କୌଣସି ଅନୁଷ୍ଠାନରେ ଛାତ୍ରମାନେ ଏପରି ସ୍ୱାଧୀନତା ଉପଭୋଗ କରନ୍ତି ନାହିଁ । ଶୃଙ୍ଖଳାର ବନ୍ଧନ ସେତେଦୂର ତୀବ୍ର ନୁହେଁ । ପିଲାମାନେ ନିଜକୁ ନିଜେ ଶାସନ କରନ୍ତି । ପ୍ରତ୍ୟେକ ବିଷୟରେ ଆତ୍ମସଂଯମ ଶିକ୍ଷା କରନ୍ତି । ସେମାନେ ନିଜର ଚଳିବା ପାଇଁ ନିୟମ ନିଜେ ପ୍ରଣୟନ କରନ୍ତି । ସେହି ନିୟମମାନ ମାନି ସମସ୍ତେ ଚଳନ୍ତି । ସେମାନଙ୍କର ନେତା ସେମାନେ ନିର୍ବାଚନ କରନ୍ତି ।

ବିଶ୍ୱଭାରତୀରେ ପ୍ରତ୍ୟେକ ଅବସ୍ଥାରେ ସହଶିକ୍ଷା ପ୍ରଚଳିତ ହୁଏ । ଛାତ୍ରର ବ୍ୟକ୍ତିତ୍ୱ ପ୍ରତି ଏଠାରେ ବିଶେଷ ଲକ୍ଷ୍ୟ ରଖାଯାଏ । ଏହା ଏଠାକାର ବୈଶିଷ୍ଟ୍ୟ ବୋଲି କହିଲେ ଚଳେ । ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନଙ୍କରେ ଖୁବ୍ କଠିନ ଶୃଙ୍ଖଳା ପ୍ରତିପାଳିତ ହୁଏ ।

ସେଠାରେ ଯେଉଁ ଛାତ୍ର ପ୍ରବେଶ କରେ ସେ ମନେ କରେ ଯେ ସେ ଗୋଟାଏ ବନ୍ଦୀଶାଳା ମଧ୍ୟକୁ ପ୍ରବେଶ କରୁଛି । ସେ ନିଜର ବ୍ୟକ୍ତିତ୍ୱ ହରାଇ ଛେଳି ମେଣ୍ଢା ପରି "ଦଳର ଜଣେ" ହୋଇ ଚଳେ । ଏହାଦ୍ୱାରା ଖୁବ୍ ଅଳ୍ପସଂଖ୍ୟକ ଚପଳମତି ଅଧମ ଛାତ୍ରମାନଙ୍କର ଉପକାର ହୋଇପାରେ । କିନ୍ତୁ ଅଧିକାଂଶଙ୍କ ପକ୍ଷରେ ଏହି ଔଦାସିନ୍ୟର ଫଳ ବଡ଼ ବିଷମୟ । ତେଣୁ ଶାନ୍ତିନିକେତନରେ ଛାତ୍ରମାନେ ନିଜର ବ୍ୟକ୍ତିତ୍ୱ ଉପଲବ୍ଧି କରିବା ପାଇଁ ଯଥେଷ୍ଟ ସୁଯୋଗ ପାଆନ୍ତି । ଶିକ୍ଷକ ପ୍ରତ୍ୟେକ ଛାତ୍ରଙ୍କୁ ଜାଣିଥାନ୍ତି ଏବଂ ସେମାନଙ୍କ ସହିତ ମଧ୍ୟ ବାସ କରନ୍ତି । ପକ୍ଷାନ୍ତରରେ ପ୍ରତ୍ୟେକ ଛାତ୍ର ତାହାର ଶିକ୍ଷକ ଓ ସହାଧ୍ୟାୟୀଗଣଙ୍କୁ ଭଲରୂପେ ଜାଣି ଥାଏ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ସ୍ନେହ, ସୌହାର୍ଦ୍ଦ୍ୟ ଏବଂ ପାରିବାରିକ ସଂପର୍କ ଥାଏ । ଦୁଷ୍ଟ ଛାତ୍ରମାନଙ୍କୁ ସେମାନଙ୍କର ଦୋଷ ସ୍ୱୀକାର କରିବା ପାଇଁ ସୁଯୋଗ ଦିଆଯାଏ । ନିତାନ୍ତ ଦୁଷ୍ଟ ଛାତ୍ରମାନଙ୍କୁ ଶାସ୍ତି ଦେବା ନିମନ୍ତେ ଗୁରୁଦେବଙ୍କ ସହିତ ସାକ୍ଷାତ କରିବାକୁ ଆଦେଶ ଦିଆଯାଏ । ପରିବାର ମଧ୍ୟରେ ପିତା ବା ପିତାମହ ତାଙ୍କର ଏକମାତ୍ର ପୁତ୍ରକୁ ଯେପରି ବୁଝାଇ କହନ୍ତି, ଗୁରୁଦେବ ସେହିପରି ସେ ଛାତ୍ରର ହୃଦୟରେ ପରିବର୍ତ୍ତନ ଆଣାଇବା ପାଇଁ କଥୋପକଥନ କରନ୍ତି । ଗୁରୁଦେବଙ୍କର ସଂପର୍କରେ ଆସିଲେ ଛାତ୍ରର ଅନ୍ତଃକରଣ ସତେ ଯେପରି ନିର୍ମଳ ହୁଏ ।

ପ୍ରାଚୀନ ଭାରତର ଆଦର୍ଶ—ସାରଲ୍ୟ ଓ ଆଡ଼ମ୍ବରଶୂନ୍ୟତା ଏଠାକାର ଛାତ୍ରମାନଙ୍କ ଜୀବନରେ ପ୍ରତିଫଳିତ ହୁଏ । ଶୟନ, ଭୋଜନ ଓ ପୋଷାକ ପରିପାଟୀରେ ଏମାନେ ନିତାନ୍ତ ସରଳ ଓ ନିରାଡ଼ମ୍ବର । ପାଶ୍ଚାତ୍ୟ ଢଙ୍ଗରେ ଗୃହନିର୍ମାଣ ପ୍ରଣାଳୀ ଏଠାରେ ଅନୁସୃତ ହୁଏ ନାହିଁ । ଗୃହଗୁଡ଼ିକର ସାଜସଜ୍ଜା ସମ୍ପୂର୍ଣ୍ଣରୂପେ ପ୍ରାଚ୍ୟ

ସ୍ଥିତରେ ହୋଇଥାଏ । ଆଶ୍ରମଶିକ୍ଷାର ମୂଳମନ୍ତ୍ର "ସରଳ ଜୀବନ ଯାପନ କର ଉଚ୍ଚଚିନ୍ତା କରିବା" ( Plain living and high thinking ) ଏଠାରେ ପ୍ରକୃତରେ ଅନୁସୃତ ହୁଏ । ତେଣୁ ଏହି ଅନୁଷ୍ଠାନ ଭାରତର ପ୍ରାଚୀନ ଗୌରବକୁ ଅକ୍ଷୁଣ୍ଣ ରଖିଛି, ଭାରତର ଯୁବକଗଣଙ୍କୁ ପ୍ରାଚ୍ୟଦୀକ୍ଷାରେ ଦୀକ୍ଷିତ କରୁଅଛି । ଏହିସବୁ କାରଣରୁ ଶାନ୍ତିନିକେତନର ବିଶ୍ୱଭାରତୀ ଭାରତର ଏକ ବିଶିଷ୍ଟ ଶିକ୍ଷାନୁଷ୍ଠାନ ଅଟେ ।

---

## ଦୟାଲବାଗ

ଏହା ଗ୍ରାମଟିଏ—ଆଗ୍ରାସହରଠାରୁ ଏକ ମାଇଲ ଦୂରରେ । ଏହି ଶବ୍ଦଟିର ଆକ୍ଷରିକ ଅର୍ଥ ଏହି ଯେ ଏହା ଦୟାଳୁଙ୍କର ଉଦ୍ୟାନ । ବାସ୍ତବରେ ପ୍ରଭୁପାଦ ସାହାବଜୀ ମହାରାଜ ସାର୍ ଆନନ୍ଦ ସ୍ୱରୂପ୍ ଦୟାର ନିଦର୍ଶନ ପାଇଁ ଏହି ଗ୍ରାମ ସ୍ଥାପନ କରିଥିଲେ । ସାହାବଜୀ-ଙ୍କର ନିଃସ୍ୱାର୍ଥ ସେବା ଓ ମହୋଦାର ଆଦର୍ଶ ଏହାର ମୂଳରେ ଥିଲା । ଅନେକ ସ୍ୱଦେଶବତ୍ସଳ ବୀରପୁରୁଷ ଭାରତର ପ୍ରଗତି କାମନା କରି ନାନାଦିଗରୁ ଚେଷ୍ଟା କରିଅଛନ୍ତି । କେତେକ ସମାଜସଂସ୍କାରଦ୍ୱାରା ଦେଶରୁ ଅନ୍ଧବିଶ୍ୱାସ, ବିଭିନ୍ନ ଜାତିଗତ ସଙ୍କୀର୍ଣ୍ଣତା ଓ କୁସଂସ୍କାରର ମୂଳୋତ୍ପାଟନ ପାଇଁ ପ୍ରାଣବଳି ଦେଇ ଅଛନ୍ତି । ଆଉ କେତେକ ଅର୍ଥନୈତିକ ସଂସ୍କାରଦ୍ୱାରା ଦେଶରୁ ଦାରିଦ୍ର୍ୟ, ବ୍ୟାଧି ଓ ମଳିନତା ଦୂରକରି ଦେଶରେ ପ୍ରାଚୁର୍ଯ୍ୟ, ଶାନ୍ତି ଓ ସରସତା ବିରାଜିତ ହେବା ପାଇଁ ବହୁ ଚେଷ୍ଟା କରିଅଛନ୍ତି । ଅନ୍ୟ କେତେକ ସ୍ୱଦେଶ ପ୍ରେମୀ ଆଧ୍ୟାତ୍ମିକ ଉନ୍ନତିବଳରେ ଦେଶରୁ ଧର୍ମାନ୍ଧତା ଦୂରକରି ସରଳ ଧର୍ମବିଶ୍ୱାସ, ନିଷ୍ଠା, ଚରିତ୍ରବଳ ଓ ସମତା ଆଣିବା ପାଇଁ ପ୍ରୟାସୀ

ହୋଇଅଛନ୍ତି । ସାହାବଜୀ ସାହ୍‌ ଆନନ୍ଦସ୍ୱରୂପ୍ ଏଥିମଧ୍ୟରୁ ଗୋଟିଏ ନିର୍ଦ୍ଦିଷ୍ଟ ପନ୍ଥାନୁସରଣ ନ କରି ତାଙ୍କ ପ୍ରତିଷ୍ଠିତ ଦୟାଲବାଗ ଉପନିବେଶରେ ଏହି ତିନି ପନ୍ଥାର ସମନ୍ୱୟ କରାଇ ଅଛନ୍ତି । ଧର୍ମ, ଶିକ୍ଷା ଓ ଶିଳ୍ପର ସମନ୍ୱୟ ହେତୁରୁ ଜାତୀୟ ଜୀବନ ସମୃଦ୍ଧ ଓ ସୁଖମୟ କରାଇବା ତାଙ୍କର ଲକ୍ଷ୍ୟ । ଏହା ନିଶ୍ଚୟ ଏକ ଅଭିନବ ପରୀକ୍ଷା ।

୧୯୧୫ ମସିହାରେ ଏହି ଦୟାଲବାଗ ଉପନିବେଶ ପ୍ରତିଷ୍ଠିତ ହେଲା । ପ୍ରଥମେ ୪ ଏକର ଭୂମି ଉପରେ ଏହି କାମ ଆରମ୍ଭ କରା ହେଲା । ବର୍ତ୍ତମାନ ଏହାର କ୍ଷେତ୍ରଫଳ ପ୍ରାୟ ୩୧୦୦ ଏକର ହେବ ଏବଂ ଏହାର ଲୋକସଂଖ୍ୟା ପ୍ରାୟ ୪୨୦୦, ସେଥିମଧ୍ୟରୁ ୧୧୫୦ ଜଣ ଛାତ୍ର ।

ଏହି ବିଶାଳ ଅନୁଷ୍ଠାନର ପୂର୍ଣ୍ଣ ବିବରଣୀ ଦେବା ଏଠାରେ ସମ୍ଭବ ନୁହେଁ । ମୋଟ ଉପରେ ଧର୍ମ, ଶିକ୍ଷା ଓ ଶିଳ୍ପ ଏଠାରେ ଏକତ୍ର ସମାବିଷ୍ଟ । ପ୍ରତ୍ୟେକ ବ୍ୟକ୍ତିର ଶିକ୍ଷିତ ହେବାର ଅଧିକାର ଅଛି । ତେଣୁ ଶିକ୍ଷା ସମାଜର ସର୍ବ ପ୍ରଥମ ଆବଶ୍ୟକ । ଅଧିକନ୍ତୁ ବର୍ତ୍ତମାନ ବିଜ୍ଞାନ ଓ ଶିଳ୍ପ ମାନବଜୀବନକୁ ବିଶେଷ ଭାବରେ ପ୍ରଭାବିତ କରିଅଛି । ଶିକ୍ଷା, ସାହିତ୍ୟ ଓ ଦର୍ଶନ ଶିଳ୍ପଦ୍ୱାରା ମଧ୍ୟ ପ୍ରଭାବିତ । ମନୁଷ୍ୟର ଅଭିରୁଚି, ମନ ଓ ଲକ୍ଷ୍ୟ କ୍ରମେ ବଦଳି ଯାଇଛି । ଧର୍ମ ଏକରକମ ସମାଜରୁ ବହିର୍ଭୂତ ହୋଇଅଛି । ଏହାର ପ୍ରତିକ୍ରିୟା ସ୍ୱରୂପ ଦୟାଲବାଗରେ ଶିକ୍ଷା ଓ ଶିଳ୍ପ ଏକତ୍ର କରାଯାଇଅଛି ଏବଂ ଶିଳ୍ପର ଜଡ଼ତା (materialism) ପ୍ରଭାବରୁ ସମାଜକୁ ରକ୍ଷା କରିବା ଧର୍ମକୁ ଶିକ୍ଷା ଓ ଶିଳ୍ପର ମୂଳଭିତ୍ତିରୂପେ ରଖାଯାଇଛି । ଧର୍ମପ୍ରାଣ ଭାରତୀୟ ଜୀବନରେ ଶିକ୍ଷା ଓ ଶିଳ୍ପ ଖଞ୍ଜି ଏକ ନୂତନ ଆଦର୍ଶରେ ସମାଜ ଗଠନ କରିବା ଏଠାକାର ଲକ୍ଷ୍ୟ ।

ସାଧାରଣ ଅନୁଷ୍ଠାନ ଛଡ଼ା ଲୋକଙ୍କର ରହିବା ପାଇଁ ବିଭିନ୍ନ ପଲ୍ଲୀ ନିର୍ମିତ ହୋଇଅଛି । ସେଗୁଡ଼ିକର ନାମ ପ୍ରେମ ନଗର, ସ୍ୱାମୀ ନଗର, ଶ୍ୱେତ ନଗର, କାର୍ଯ୍ୟାଗାର ନଗର, ଶରଣାଶ୍ରମ ନଗର ଓ ବିଦ୍ୟୁତ ନଗର । ଏଠାରେ ରାସ୍ତାଗୁଡ଼ିକ ଖୁବ୍ ଓସାରିଆ, ବେଶ୍ ସଫା ମଧ୍ୟ । ପାଣିକଳ ଏବଂ ବିଜୁଳି ଆଲୁଅର ବନ୍ଦୋବସ୍ତ କରି ହୋଇଅଛି ।

ପ୍ରାଥମିକ ଶିକ୍ଷା ଏଠାକାର ବାସିନ୍ଦାଙ୍କ ପାଇଁ ଅବୈତନିକ ଓ ବାଧ୍ୟତାମୂଳକ । ଦୁଇବର୍ଷରୁ ପାଞ୍ଚବର୍ଷ ବୟସ୍କ ପିଲାଙ୍କ ପାଇଁ ଶିଶୁବିଦ୍ୟାଳୟର (nursery school) ବ୍ୟବସ୍ଥା କରାହୋଇ ଅଛି । ସେମାନଙ୍କ ପାଇଁ ଗୋଟାଏ କ୍ରୀଡ଼ାକେନ୍ଦ୍ର ହୋଇଅଛି । ସବୁଜ ଘାସ ପଡ଼ିଆରେ ସେମାନେ ଏକତ୍ର ହୋଇ କ୍ରୀଡ଼ା କରନ୍ତି । ଦୈନିକ ଦୁଇ କିମ୍ବା ତିନି ଘଣ୍ଟା ସେମାନେ ଉପଯୁକ୍ତ ପରିଚାଳିକାଙ୍କ ତତ୍ତ୍ୱାବଧାନରେ ହସ ଖୁସିରେ କଟାନ୍ତି । ନାନାପ୍ରକାର କ୍ରୀଡ଼ାସାମଗ୍ରୀ ସେମାନଙ୍କୁ ଯୋଗାଇ ଦିଆ ହୋଇଅଛି । କଣ୍ଢେଇ ଘର, ରେଲଗାଡ଼ି, କାଦୁଅ, ଘର ତିଆରି କରିବା ପାଇଁ ନାନା ପ୍ରକାର ଉପକରଣ ସେମାନଙ୍କୁ ଦିଆ ହୋଇଅଛି । ତଦ୍ୱାରା କ୍ରୀଡ଼ା ସହିତ ଗଠନ କରିବାର ପ୍ରବୃତ୍ତି ଜନ୍ମିବ । ଏଠାରେ ପିଲାମାନେ ଖୁବ୍ ଆଗ୍ରହର ସହିତ ସେମାନଙ୍କ ଜୀବନର ପରବର୍ତ୍ତୀ ଅବସ୍ଥାକୁ ଅପେକ୍ଷା କରନ୍ତି ।

ନିମ୍ନପ୍ରାଥମିକ, ଉଚ୍ଚପ୍ରାଥମିକ, ମଧ୍ୟ, ଉଚ୍ଚ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାପାଇଁ ବ୍ୟବସ୍ଥା କରି ହୋଇଅଛି । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିବା ପାଇଁ ଯୋଜନା କରାହୋଇଅଛି । ଶୃଙ୍ଖଳା, ସମୟାନୁବର୍ତ୍ତିତା ଓ ନିୟମିତତା ପ୍ରତି ବିଶେଷ ଦୃଷ୍ଟିରଖି ଏଠାରେ କାର୍ଯ୍ୟ କରାହୁଏ । ସ୍ୱାଧୀନ ଚିନ୍ତା ଓ ପ୍ରାଞ୍ଜଳ ଭାବପ୍ରକାଶ ପାଇଁ ସମସ୍ତ

ଚେଷ୍ଟା କରାଯାଏ । ଏଠାରେ ପୁସ୍ତକାଗାର ଓ ପଠନଗୃହ ଅଛି । ପୁସ୍ତକାଗାରରେ ପ୍ରାୟ ୯୮୩୫ ଖଣ୍ଡ ବିଭିନ୍ନ ପ୍ରକାର ଉପାଦେୟ ପୁସ୍ତକ ଛାତ୍ରମାନଙ୍କ ବ୍ୟବହାର ପାଇଁ ଅଛି । ସ୍ୱାସ୍ଥ୍ୟ ପାଇଁ କ୍ରୀଡ଼ା ପ୍ରଭୃତିର ବ୍ୟବସ୍ଥା କରାହୋଇଅଛି । ସ୍ତ୍ରୀଶିକ୍ଷା ପାଇଁ ଗୋଟାଏ ସ୍ୱତନ୍ତ୍ର କଲେଜ—ପ୍ରେମ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ପ୍ରାଥମିକ ଶ୍ରେଣୀମାନଙ୍କରେ କିଣ୍ଡାର ଗାର୍ଟେନ ପ୍ରଣାଳୀରେ ଶିକ୍ଷା ଦିଆଯାଏ । ସ୍କାଉଟିଂ ( Scouting ) ଏବଂ ଗାର୍ଲ୍ ଗାଇଡ ( girl-guide ) ଆନ୍ଦୋଳନରେ ଛାତ୍ରମାନେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି ।

ସାଧାରଣତଃ ଦୋଷାରୋପ କରାଯାଏ ଯେ ଭାରତର ଆଧୁନିକ ଶିକ୍ଷାପଦ୍ଧତି ପୋଥିଗତ ହୋଇଅଛି—ଅର୍ଥାତ୍ ପୁସ୍ତକ-ପାଠ ଉପରେ ଅତ୍ୟଧିକ ଜୋର ଦିଆ ଯାଉଅଛି । ହାତକାମ ଓ କାର୍ଯ୍ୟମୂଳକ ଶିକ୍ଷା ଉପରେ ଆଦୌ ନଜର ଦିଆଯାଏ ନାହିଁ । ସେଥିପାଇଁ ଏଠାକାର କାର୍ଯ୍ୟକ୍ରମରେ ଯଥାସ୍ଥାନରେ କାଠୁଆ କାମ, କାଗଜକଟା, ଦରଜିକାମ, ଚମଡ଼ାକାମ, ବଗିଚାକାମ ଇତ୍ୟାଦି ଖଞ୍ଜା ହୋଇ ଅଛି । ଏ ସବୁ ବିଷୟରେ ଶିଳ୍ପରେ ନୈପୁଣ୍ୟ ଲାଭ କରିଥିବା ବିଶେଷଜ୍ଞମାନଙ୍କଠାରୁ ଛାତ୍ରମାନେ ଶିକ୍ଷା ପାଆନ୍ତି, ଏବଂ କାରଖାନା-ମାନଙ୍କରେ କାମ ଶିଖିବାର ସୁବିଧା ପାଆନ୍ତି । ବର୍ତ୍ତମାନ କୃଷିତତ୍ତ୍ୱ ଓ ଗୋପାଳନ ଶିକ୍ଷା ଦେବା ପାଇଁ ଚେଷ୍ଟା କରାଯାଉଅଛି ।

ଯେଉଁ ଶିକ୍ଷିତ ଯୁବକଗଣ ଏହି ସବୁ ଶିକ୍ଷାନୁଷ୍ଠାନମାନଙ୍କରୁ ଉତ୍ତୀର୍ଣ୍ଣ ହୁଅନ୍ତି ସେମାନଙ୍କୁ କାମ ଯୋଗାଇବା ପାଇଁ ନାନା ଶିଳ୍ପ ଓ କାରଖାନା ଆରମ୍ଭ ହୋଇଅଛି । ବୟନ ଶିଳ୍ପ—ପଶମ ଶିଳ୍ପ ଓ ତୂଳାକାମ, ଚମଡ଼ା କାମ ଇତ୍ୟାଦି ଶିଳ୍ପାନୁଷ୍ଠାନମାନ ସ୍ଥାପିତ ହେଲେ । କୃଷିବିଭାଗ ଓ ଗୋଶାଳା ରହିଥିବାରୁ ଦୟାଲବାଗର

ସମସ୍ତ ଅଧିବାସୀ ଖାଦ୍ୟ ଦ୍ରବ୍ୟ ଅକ୍ଲେଶରେ ପାଇ ପାରନ୍ତି । ଦୈନିକ ୨୫୦୦ ପାଉଣ୍ଡ ଦୁଧ ଏବଂ ୫୦୦ ପାଉଣ୍ଡ ଲହୁଣୀ ଓ ଘିଅ ବିକ୍ରି କରାଯାଏ । ଏହି କାରଖାନାମାନଙ୍କରେ ଯେଉଁ ସବୁ ପଦାର୍ଥ ପ୍ରସ୍ତୁତ ହୁଏ, ଦୟାଲବାଗର ବାସିନ୍ଦାମାନେ ତାହାକୁ କ୍ରୟ କରନ୍ତି । ତଦ୍ୱାରା ଏହି ଶିଳ୍ପ ଗୁଡ଼ିକ ସମୃଦ୍ଧ ହୁଏ । ଧର୍ମପ୍ରତି ଆସ୍ଥା ଓ ଧର୍ମପ୍ରବଣତା ଭାରତୀୟ ଜାତୀୟ ଜୀବନର ଲକ୍ଷଣ ଅଟେ । ଧର୍ମଭାବଦ୍ୱାରା ଭାରତୀୟ ଚିନ୍ତାଧାରା, ସଭ୍ୟତା ଓ କୃଷ୍ଟିର ବିଶେଷତ୍ୱ ପ୍ରତିପାଦିତ ହୁଏ । ତେଣୁ ଧର୍ମ ବିନା ଭାରତୀୟ ସମାଜ ତିଷ୍ଠିପାରିବ ନାହିଁ । ଦୟାଲବାଗର ପ୍ରତିଷ୍ଠାତା ଏ ବିଷୟ ଉପଲବ୍ଧି କରି ଧର୍ମାନୁଷ୍ଠାନର ବ୍ୟବସ୍ଥା କରାଇ ଅଛନ୍ତି । ସମାଜକୁ ଗଠନ କରିବା ପାଇଁ ଶିକ୍ଷା ଓ ଶିଳ୍ପ ଯେତିକି ଆବଶ୍ୟକ ଧର୍ମ ମଧ୍ୟ ସେତିକି ଆବଶ୍ୟକ । ତେଣୁ ଏଠାରେ ଧର୍ମକାର୍ଯ୍ୟ ଯଥାରୀତି ପ୍ରତିପାଳିତ ହୁଏ । ସକାଳେ ଏବଂ ସନ୍ଧ୍ୟାରେ "ସନ୍ତଗୁରୁ"ଙ୍କର ଉପସ୍ଥିତିରେ ପ୍ରାର୍ଥନା ହୁଏ । ସମସ୍ତେ ଏଥିରେ ଯୋଗଦାନ କରନ୍ତି । ଅନ୍ୟାୟ ଉପାୟରେ ଜୀବିକାର୍ଜ୍ଜନ କରିବାକୁ ସମସ୍ତେ ଘୃଣା କରନ୍ତି ।

ଏହି ପ୍ରବନ୍ଧର ଉପସଂହାର କରିବା ପୂର୍ବରୁ ସାହାବଜୀ ମହାରାଜାଙ୍କର ଉଦାର ମନୋଭାବ ଲକ୍ଷ୍ୟ କରିବା ଉଚିତ । ସେ ସମସ୍ତଙ୍କୁ ସମାନ ଚକ୍ଷୁରେ ଭାଇ ପରି ଦେଖୁଥିଲେ । ତାଙ୍କର ଲକ୍ଷ୍ୟ ଥିଲା—

"Let us work like humble servants
of the Supreme Father,
Let us live like dutiful children
of the Supreme Father,
Let us love each other like earnest
devotees of the Supreme Father."

ଅର୍ଥାତ୍ ପରମପିତାଙ୍କର ବନୀତଭକ୍ତଙ୍କ ରୂପେ କାମ କରିବା, ପରମପିତାଙ୍କର କର୍ତ୍ତବ୍ୟନିଷ୍ଠ ସନ୍ତାନ ରୂପେ ବାସ କରିବା ଏବଂ ପରମପିତାଙ୍କର ଅନୁରକ୍ତ ଭକ୍ତ ରୂପେ ପରସ୍ପରଙ୍କୁ ସ୍ନେହ କରିବା ।

---

## କସିପୁର

କଲିକତାର ଅଦୂରରେ କସିପୁରଠାରେ ଅନ୍ୟ ଏକ ଅଭିନବ ଅନୁଷ୍ଠାନ ଅବସ୍ଥିତ । ଭାରତୀୟ ବାଳକମାନଙ୍କୁ ଆଦର୍ଶରୀତିରେ ଶିକ୍ଷା ଦେବାପାଇଁ ଉପଯୁକ୍ତ ପନ୍ଥାନୁସରଣ କରିବା ଏଠାକାର କାର୍ଯ୍ୟ ପ୍ରାଚ୍ୟ ଛାତ୍ରମାନଙ୍କୁ ପାଶ୍ଚାତ୍ୟ ରୀତିରେ ଶିକ୍ଷା ଦେବା ଆଦୌ ଫଳପ୍ରଦ ନୁହେଁ । ଏହା ସ୍ୱୀକାର କରି ଏକ ନୂତନ ମାର୍ଗ ସ୍ଥିରକରିବା ଏହି ଅନୁଷ୍ଠାନର ଲକ୍ଷ୍ୟ । ଏହାର ନାମ "ବାଳକମାନଙ୍କ ନିଜଗୃହ" ( **Boys' own Home** )। ବିଦ୍ୟାଳୟକୁ ବାଳକମାନଙ୍କର ନିଜ ଗୃହ କହିବା ଦ୍ୱାରା ଛାତ୍ରମାନେ ବିଦ୍ୟାଳୟ ପ୍ରତି ସ୍ୱତଃ ଅନୁରକ୍ତ ହେବେ । ସେମାନଙ୍କର ମମତା ଓ ଆଗ୍ରହ ବିଦ୍ୟାଳୟପ୍ରତି ରହିବ । ବିଦ୍ୟାଳୟ ଏକ ଅପରିଚିତ ଗୃହ ଏବଂ ଏହା ଅନ୍ୟ ଲୋକର— ଏହି ଭାବ ସେମାନଙ୍କ ମନରେ ରହିବ ନାହିଁ । ତେଣୁ ବିଦ୍ୟାଳୟର ନାମକରଣ ସମୀଚିନ ହୋଇଅଛି ।

୧୯୦୪ ଖ୍ରୀଷ୍ଟାବ୍ଦରେ ଏହି ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଏହାର ପ୍ରତିଷ୍ଠାତା ରେବାରେଣ୍ଡ ଅନିମାନନ୍ଦ ସେ ଦିନରୁ ଏହାର ଅଧ୍ୟକ୍ଷରୂପେ କାର୍ଯ୍ୟ କରି ଆସୁଅଛନ୍ତି । ଏହାର ଏକ ବିଶେଷତ୍ୱ ଏହି ଯେ ଏଠାରେ ବ୍ୟକ୍ତିଗତ ଶିକ୍ଷା ଦିଆଯାଏ । ଯେତେଦୂର ସମ୍ଭବ ହୋଇପାରେ ଖୁବ୍ କମ୍ ସଂଖ୍ୟକ ଛାତ୍ର ଜଣେ ଜଣେ ଶିକ୍ଷକଙ୍କର ତତ୍ତ୍ୱାବଧାନରେ ଅଧ୍ୟୟନ କରନ୍ତି । ଏହି ବ୍ୟକ୍ତିଗତ ଶିକ୍ଷାଦାନ ଦ୍ୱାରା

ଶିକ୍ଷକ ଛାତ୍ରର ମନ, ଅଭିରୁଚି ଏବଂ ଶିକ୍ଷା କରିବାର କ୍ଷମତା ଜାଣିବାକୁ ଅବସର ପାଆନ୍ତି । ତେଣୁ ଶିକ୍ଷକ ଉପଯୁକ୍ତ ଦୃଷ୍ଟାନ୍ତ ଦେଇ ପାରନ୍ତି ଏବଂ ଶିକ୍ଷାକୁ ଖୁବ୍ ଫଳପ୍ରଦ କରାଇ ପାରନ୍ତି । ଏଠାରେ ଗୃହରକ୍ଷୀ ଶିକ୍ଷକ ଥାନ୍ତି । ଯେଉଁ ଛାତ୍ରମାନଙ୍କର ବୟସ ପାଞ୍ଚ ବର୍ଷରୁ ଅଧିକ କିନ୍ତୁ ଦଶ ବର୍ଷରୁ କମ୍ କେବଳ ସେହିମାନେ ବିଦ୍ୟାଳୟରେ ପ୍ରବେଶ କରି ପାରିବେ । ସେମାନଙ୍କର ବୟସ ୧୬ ବର୍ଷ ନ ହେବା ପୂର୍ବରୁ ସେମାନେ ବିଦ୍ୟାଳୟ ପରିତ୍ୟାଗ କରନ୍ତି ନାହିଁ ।

ଏହି ବିଦ୍ୟାଳୟର ଅନ୍ୟତମ ବିଶେଷତ୍ୱ ଏହି ଯେ ଛାତ୍ରମାନଙ୍କୁ ଯାବତୀୟ ଶାରୀରିକ ପରିଶ୍ରମ କରିବାକୁ ପଡ଼େ । ଘର ସଫା କରିବା, ଧୂଳି ଝାଡ଼ିଦେବା, କାନ୍ଥରେ ଚୂନଦେବା, ମରାମତି କରିବା, ପରିବା କିଣିବା, ରାନ୍ଧିବା ପ୍ରଭୃତି କାମ ପ୍ରତ୍ୟେକ ଛାତ୍ରଙ୍କୁ ହାତେ ହାତେ କରିବାକୁ ପଡ଼େ । ଅଧିକନ୍ତୁ ପ୍ରତ୍ୟେକ ବିଷୟ ପ୍ରତ୍ୟକ୍ଷ ପ୍ରଣାଳୀରେ ଶିକ୍ଷା ଦିଆଯାଏ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ଦ୍ୱାରା ବିଜ୍ଞାନ, ପଠନ ଓ ପ୍ରଶ୍ନୋତ୍ତରଦ୍ୱାରା ଭାଷା ଓ ସାହିତ୍ୟ ଏବଂ ମାନଚିତ୍ରଦ୍ୱାରା ଭୂଗୋଳ ଶିକ୍ଷା ଦିଆଯାଏ । ଏହି ପ୍ରଣାଳୀରେ ଶିକ୍ଷାପାଇବାଦ୍ୱାରା ପିଲାମାନଙ୍କର ମାନସିକ ସ୍ୱତନ୍ତ୍ରତା ଆସେ । ସାର୍ ମାଇକେଲ ସାଡଲର ( Sadler ) ଏହି ବିଦ୍ୟାଳୟ ପରିଦର୍ଶନ କରି ସାତିଶୟ ପ୍ରୀତ ହୋଇଥିଲେ ଏବଂ କହିଥିଲେ ଯେ ଇଂରାଜବାଳକମାନଙ୍କ ଅପେକ୍ଷା ଏମାନଙ୍କର ଇଂରାଜୀ ଖୁବ୍ ସଫାଇ ।

ଏଠାରେ ଶ୍ରେଣୀ ବିଭାଗ ନାହିଁ । ପ୍ରତ୍ୟେକ ବିଷୟରେ ପିଲାମାନଙ୍କର ବ୍ୟୁତ୍ପତ୍ତି ଅନୁଯାୟୀ ଦଳ ( Group ) ଗଠନ କରାଯାଇ ଥାଏ । କୌଣସି ବିଷୟରେ ଗୋଟିଏ ପିଲାର ଯେତିକି ଜ୍ଞାନ ଅଛି ସେତିକି ଜ୍ଞାନ ଥିବା ଅନ୍ୟାନ୍ୟ ବାଳକଙ୍କ ସହିତ ସେ ସେହି

ବିଷୟ ଅଧ୍ୟୟନ କରେ; ଅଥଚ ଅନ୍ୟ ବିଷୟ ସେ ସେହି ବାଳକଙ୍କ ସହିତ ପଢ଼ି ନ ପାରେ। କୌଣସି ବାଳକ ଗଣିତ ପାଇଁ ଗୋଟିଏ ଦଳ ଭୁକ୍ତ ହୋଇପାରେ କିନ୍ତୁ ଭୂଗୋଳ ପାଇଁ ଅନ୍ୟ ଏକ ଦଳରେ ଯୋଗଦାନ କରିପାରେ, ଅର୍ଥାତ୍ ପିଲାମାନଙ୍କର ପ୍ରତ୍ୟେକ ବିଷୟରେ ଥିବା ଜ୍ଞାନ ଅନୁଯାୟୀ ଦଳଗଠନ କରାଯାଏ। ସପ୍ତାହସାରା ଯାହା ପଢ଼ାଯାଇଛି ପ୍ରତି ଶନିବାର ତାହାର ପୁନରାବୃତ୍ତି କରାଯାଏ। କୌଣସି ଗୋଟାଏ ବିଷୟ ଶେଷ ହେଲେ ସେ ବିଷୟରେ ପରୀକ୍ଷା କରାଯାଏ। ଏଠାରେ ବାର୍ଷିକ ପରୀକ୍ଷା ହୁଏ ନାହିଁ। କୌଣସି ପିଲା ତାହାର ନିଜ ଦଳରେ ଭଲ କଲେ ତାହାକୁ ଅନ୍ୟ ଦଳକୁ ଉଠାଇ ଦିଆଯାଏ। ବିଦ୍ୟାଳୟ ପରିତ୍ୟାଗ କରିବା ପୂର୍ବରୁ ଛାତ୍ରମାନେ ଅଳ୍ପବୟସ୍କ ବାଳକମାନଙ୍କୁ ଶିକ୍ଷା ଦିଅନ୍ତି। ଏହାଦ୍ୱାରା ସେମାନେ ଯେଉଁ ବିଷୟମାନ ଶିକ୍ଷା କରିଛନ୍ତି ସେଗୁଡ଼ିକୁ କେତେଦୂର ଆପଣାର କରିପାରିଛନ୍ତି ତାହା ପରୀକ୍ଷା କରାଯାଏ।

ଏଠାରେ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଥିବା ସମ୍ପର୍କ ଅନ୍ୟାନ୍ୟ ବିଦ୍ୟାଳୟ ପରି ନୁହେଁ। ଶିକ୍ଷକ ଶିଷ୍ୟମାନଙ୍କର ପିତା ସଦୃଶ। ଛାତ୍ରମାନଙ୍କର ଉନ୍ନତି ପାଇଁ ସେ ଏକାନ୍ତ ଚିନ୍ତିତ। ତେଣୁ ସେ ନାନା ଚିତ୍ତାକର୍ଷକ ଉପାୟ ଦ୍ୱାରା ଶିକ୍ଷା ଦିଅନ୍ତି। ଶିକ୍ଷାଦ୍ୱାରା ଶିଷ୍ୟ ଉପକୃତ ହେବ—ଏହା ତାଙ୍କର ପରମ ଲକ୍ଷ୍ୟ। ଛାତ୍ର ବିଦ୍ୟାଳୟରେ ସକାଳ ଦଶଟାଠାରୁ ସନ୍ଧ୍ୟା ସାଢ଼େ ପାଞ୍ଚଟା ପର୍ଯ୍ୟନ୍ତ ରହି ଅଧ୍ୟୟନ କରେ। ସେ ସମୟରେ ଶିକ୍ଷକଙ୍କ କଥା ସେ ଅଭିନିବେଶ ସହକାରେ ଶୁଣେ। ଭାରତୀୟ ଖେଳ, ଶାରୀରିକ ପରିଶ୍ରମ, ସନ୍ତରଣ ପ୍ରଭୃତି କାର୍ଯ୍ୟରେ ସେ ଯୋଗଦାନ କରେ। ଶିଷ୍ୟ ଓ ଶିକ୍ଷକଙ୍କ ମଧ୍ୟରେ ଘନିଷ୍ଠ ଏବଂ ବ୍ୟକ୍ତିଗତ ସମ୍ପର୍କ ବରାବର

ଥାଏ । ତେଣୁ ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଏହି ଅନୁଷ୍ଠାନ ଭାରତର ପ୍ରାଚୀନ ଆଦର୍ଶଦ୍ୱାରା ପରିଚାଳିତ । ଏଠାରେ ଚରିତ୍ର ଗଠନ ପ୍ରତି ବିଶେଷ ଧ୍ୟାନ ଦିଆଯାଏ । ଫଳରେ ଗୁରୁଜନଙ୍କ ପ୍ରତି ଭକ୍ତି, କର୍ତ୍ତବ୍ୟ ଓ ଶୃଙ୍ଖଳାପ୍ରତି ଆଗ୍ରହ ଏବଂ ସତ୍ୟବାଦିତା ଓ ସାଧୁତା ଛାତ୍ରମାନଙ୍କ ମନରେ ଦୃଢ଼ୀଭୂତ ହୁଏ । ଏହାହିଁ ପ୍ରକୃତ ଶିକ୍ଷାର ଲକ୍ଷଣ ।

ଧର୍ମଶିକ୍ଷା ଦେବାପାଇଁ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇ ନାହିଁ । ଅବଶ୍ୟ ଏଠାକାର ବାୟୁମଣ୍ଡଳଟି ଧର୍ମଭାବାପନ୍ନ । ମୋଟ ଉପରେ କହିବାକୁ ଏହି ଅନୁଷ୍ଠାନରେ ଭାରତୀୟ ଜୀବନକୁ ଭାରତ ପାଇଁ ଗଠନ କରିବା ଲାଗି ସମସ୍ତ ଚେଷ୍ଟା କରାଯାଇଅଛି । ବାସ୍ତବରେ ଭାରତକୁ ଶିକ୍ଷିତ କରାଇବା ପାଇଁ ଶିକ୍ଷା ପଦ୍ଧତି ସମ୍ପୂର୍ଣ୍ଣ ଭାରତୀୟ ହେବା ଉଚିତ । ଅନ୍ଧଭାବରେ ପାଶ୍ଚାତ୍ୟ ଶିକ୍ଷା ପଦ୍ଧତିକୁ ଅନୁକରଣ କରିବା ଅନୁଚିତ । ଭାରତର ଆଦର୍ଶ, କୃଷ୍ଟି, ସଭ୍ୟତା ଓ ସଂସ୍କୃତି ଭାରତୀୟ ଶିକ୍ଷାପଦ୍ଧତିରେ ପ୍ରତିଫଳିତ ହେବା ଉଚିତ । ତାହାହେଲେ ଏହା ଜାତୀୟ ଶିକ୍ଷା ପଦ୍ଧତି ବୋଲି ପରିଗଣିତ ହେବ ଏବଂ ତେଣୁ ଏହା ଜାତୀୟ ଜୀବନକୁ ପରିପୁଷ୍ଟ ଓ ସମୃଦ୍ଧ କରାଇବ ।

---

## ଗୁରୁକୁଳ, କାଙ୍ଗ୍ରୀ

ଧର୍ମପ୍ରାଣ ଭାରତବର୍ଷ ଦେଶରେ ହରିଦ୍ୱାର ଏକ ପବିତ୍ର ପୀଠ ଅଟେ । ଏହା ନଗରାଜ ହିମାଳୟର ପାଦଦେଶରେ ଅବସ୍ଥିତ । ପତିତପାବନୀ ଗଙ୍ଗା ଏହିଠାରେ ପାର୍ବତ୍ୟ ଶଯ୍ୟା ପରିତ୍ୟାଗ କରି ଜଗତର କଲ୍ୟାଣ ଉଦ୍ଦେଶ୍ୟରେ ସମତଳ ପ୍ରଦେଶରେ ପଦାର୍ପଣ କରିଅଛନ୍ତି । ସ୍ଥାନଟି ଯେପରି ପୂତ ସେହିପରି ମନୋହର । ଗଙ୍ଗାର ନୟନାଭିରାମ ଜଳପ୍ରପାତ ଓ ପ୍ରକୃତିର ଶୋଭା ଦର୍ଶକର ମନକୁ

ହୁଏନାଏ । ତେଣୁ ଏହା ଭାରତର ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ଅନ୍ୟତମ । ଅଯାଚିତ ଭାବରେ ଲୋକସେବା କରିବା କେବଳ ମନୀଷିଙ୍କ ଜୀବନରେ ସମ୍ଭବ ହୋଇଥାଏ । ପୁଣ୍ୟତୋୟା ଗଙ୍ଗା ସଂସାରର କଲୁଷ ନାଶନ ନିମିତ୍ତ ନିଜେ ଏଠାରେ ଅବତୀର୍ଣ୍ଣା ହେଲେ । ପରଦୁଃଖରେ ବିଗଳିତ ହୋଇ ପାପୀତାପୀଙ୍କୁ ଆଶ୍ରୟ ଦେଲେ । ସେହିପରି ଆର୍ଯ୍ୟସମାଜସ୍ଥାପୟିତା ମହାତ୍ମା ଦୟାନନ୍ଦ ସରସ୍ୱତୀ ପତନୋନ୍ମୁଖୀ ଭାରତର ଉଦ୍ଧାର ଲାଗି ଗୁରୁକୁଳ କାଙ୍ଗ୍ରୀ ସ୍ଥାପନ କଲେ ।

ଆଶ୍ରମଶିକ୍ଷା ଅତୀତ ଭାରତର ଗୌରବ ଅଟେ । କିନ୍ତୁ ତାହା ପ୍ରାୟ ବିଲୁପ୍ତ । ଆଜି ଭାରତୀୟ ଯୁବକ ଅସ୍ଥିକଙ୍କାଳସାର; କାରଣ ତାହାର ଆଶ୍ରମଶିକ୍ଷା ନାହିଁ । ଗୁରୁଗୃହରେ ରହି କଠିନ ପରିଶ୍ରମ କରି ସଂଯତେନ୍ଦ୍ରିୟ ହୋଇ ସାଧନା କରିବାର ପ୍ରଥା ଆଉ ନାହିଁ । ସଂଯମ ଆଶ୍ରମଶିକ୍ଷାର ମୂଳମନ୍ତ୍ର । "ମରଣଂ ବିନ୍ଦୁପାତେନ ଜୀବନଂ ବିନ୍ଦୁଧାରଣାତ୍" । ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ଶିକ୍ଷା ଆଜି ଆଉ ନାହିଁ । ତେଣୁ ଭାରତୀୟ ଯୁବକ ଆଶ୍ରମଶିକ୍ଷାରୁ ବଞ୍ଚିତ ହୋଇ ହୀନବଳ ଓ ନୈତିକ ଦୁର୍ବଳ ହୋଇଅଛି । ଏହି ଦୁରବସ୍ଥା ଦେଖି ସ୍ୱାମୀ ଦୟାନନ୍ଦ ୧୯୦୨ ଖ୍ରୀଷ୍ଟାବ୍ଦରେ ଏଠାରେ ଆଶ୍ରମ ଶିକ୍ଷାର ପୁନରୁଦ୍ଧାର କଲେ । ବୈଦିକ ଧର୍ମ ଓ ଭାରତୀୟ କୃଷ୍ଟିର ଅନୁଶୀଳନ ଗୁରୁକୁଳ ଶିକ୍ଷାର ଲକ୍ଷ୍ୟ । ସଂସ୍କୃତ ସାହିତ୍ୟର ଅଧ୍ୟୟନ ଏବଂ ବ୍ରହ୍ମଚର୍ଯ୍ୟ ରକ୍ଷା— ଏହି ଦୁଇଟି ଏହି ଶିକ୍ଷାର ବିଶେଷତ୍ୱ ।

ସାତ କିମ୍ବା ଆଠ ବର୍ଷ ବୟସର ବାଳକ ଗୁରୁକୁଳରେ ପ୍ରବେଶ କରିପାରେ । ତାହାକୁ ପ୍ରଥମେ ଦାରିଦ୍ର୍ୟ, ସାଧୁତା ଓ ଆଜ୍ଞାନୁବର୍ତ୍ତିତାର ବ୍ରତ ଗ୍ରହଣ କରିବାକୁ ପଡ଼େ । ଯେଉଁ

ବାଲକମାନେ ଏଠାରେ ଅଧ୍ୟୟନ କରିବେ, ସେମାନଙ୍କର ପିତାମାତାଙ୍କର ସ୍ୱୀକୃତି ରହିବା ଉଚିତ ଯେ ବାଲକମାନେ ସମସ୍ତ କାର୍ଯ୍ୟ ସାରିବା ପର୍ଯ୍ୟନ୍ତ ଏଠାରେ ରହିବେ । ସେଠାକାର କାର୍ଯ୍ୟ ଷୋଳବର୍ଷବ୍ୟାପୀ—ଅର୍ଥାତ୍ ବାଲକକୁ ଚବିଶ ବର୍ଷ ହେବା ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ସେଠାରେ ଅଧ୍ୟୟନ କରିବାକୁ ପଡ଼ିବ । ଏହି ସମୟ ମଧ୍ୟରେ ନିତାନ୍ତ ଦରକାର ନ ପଡ଼ିବା ପର୍ଯ୍ୟନ୍ତ ସେମାନଙ୍କୁ ଘରକୁ ଫେରିବାକୁ ପଡ଼ିବ ନାହିଁ । ଏପରିକି ଦୀର୍ଘ ଅବକାଶ ମଧ୍ୟରେ ସେମାନଙ୍କୁ ସେଠାରେ ରହିବାକୁ ପଡ଼ିବ । ତଦ୍ଦ୍ୱାରା ସଂସାରର ପ୍ରଲୋଭନ, ଅସ୍ଥିରତା, ଗୃହଁଲ୍ୟ ପ୍ରଭୃତି ଦୂଷିତ ପ୍ରଭାବରୁ ସେ ରକ୍ଷା ପାଇପାରିବ । ବିଦ୍ୟାଳୟର ପ୍ରଭାବ ତଦ୍ଦ୍ୱାରା ଅବାଧରେ ଛାତ୍ରର ମନ ଉପରେ ପଡ଼ିବ । ଛାତ୍ରର ଚରିତ୍ର ଗଠିତ ହେବ । ସେ ଗୈରିକ ବସ୍ତ୍ର ପରିଧାନ କରିବ । ସମ୍ପୂର୍ଣ୍ଣ ନିରାମିଷ ଭୋଜନ କରି ସାଧୁ ଜୀବନଯାପନ କରିବା ଏଠାକାର ପ୍ରଧାନ କାର୍ଯ୍ୟ । ଛାତ୍ରମାନେ ପ୍ରତିଦିନ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ପ୍ରଥମେ ବ୍ୟାୟାମ ତତ୍ପରେ ସ୍ନାନ ଓ ପୂଜା କରନ୍ତି । ଅଧ୍ୟକ୍ଷଙ୍କର ସଭାପତିତ୍ୱରେ ସମସ୍ତେ ନୀରବରେ ପ୍ରାର୍ଥନା କରନ୍ତି ଏବଂ ଧ୍ୟାନମଗ୍ନ ରହନ୍ତି । ଶିକ୍ଷାକାର୍ଯ୍ୟ ଖୁବ୍ ପ୍ରତ୍ୟୁଷରୁ ଆରମ୍ଭ ହୁଏ । ସନ୍ଧ୍ୟା ହେଲେ ସମସ୍ତେ ବିଶ୍ରାମ କରନ୍ତି ।

ସାନ୍ଧ୍ୟପ୍ରାର୍ଥନା ସମାପନ କରି ଛାତ୍ରମାନେ "ଅଗ୍ନିହୋତ୍ର"ରେ ଯୋଗଦାନ କରନ୍ତି । "ଅଗ୍ନିହୋତ୍ର" ଭାରତରେ ସର୍ବତ୍ର ପ୍ରଚଳିତ । ବୈଦିକ ନିୟମାନୁସାରେ ଏହି ଉତ୍ସବଟି ସମାହିତ ହୁଏ । କାଷ୍ଠଖଣ୍ଡମାନଙ୍କ ଉପରେ ଘୃତ ଦିଆଯାଏ ଏବଂ ଅଗ୍ନି ପ୍ରଜ୍ୱଳିତ ହୁଏ । ପ୍ରତ୍ୟେକ ପ୍ରକୋଷ୍ଠରେ ଛାତ୍ରମାନେ ଏକତ୍ର ହୋଇ ଜଣେ ନେତାଙ୍କର ପରିଚାଳନାରେ ଏହି କାର୍ଯ୍ୟ କରନ୍ତି । ବେଳେ ବେଳେ ଏହି ଅଗ୍ନିରେ ଚିନି, ସୁବାସିତ ତୃଣ ଓ ଅନ୍ୟାନ୍ୟ ସୁବାସିତ ଦ୍ରବ୍ୟ

ଦିଆଯାଏ । ତତ୍ପରେ ଛାତ୍ରମାନେ ସମସ୍ୱରରେ ସଂସ୍କୃତ ଶ୍ଳୋକ ଆବୃତ୍ତି କରନ୍ତି । ଏହି ଶ୍ଳୋକମାନ ବେଦରୁ ଉଦ୍ଧୃତ ହୋଇଥାଏ ।

ହିନ୍ଦିଭାଷା ଶିକ୍ଷା ମାଧ୍ୟମ ଅଟେ । କିନ୍ତୁ ସଂସ୍କୃତ ସାହିତ୍ୟ ଉପରେ ଖୁବ୍ ଜୋର ଦିଆଯାଏ । ବିଦ୍ୟାଳୟରେ ଅନେକ ସାହିତ୍ୟିକ ଏବଂ ଆଲୋଚନାମୂଳକ ସଭାମାନ ଅନୁଷ୍ଠିତ ହୁଏ । ସେଥିରେ ସଂସ୍କୃତଭାଷା ବ୍ୟବହାର କରାଯାଏ । ପିଲମାନେ ଅଷ୍ଟାଦଶ ବର୍ଷ ବୟସ୍କ ବା ତଦୂର୍ଦ୍ଧ୍ୱ ହେବା ବେଳକୁ ସଂସ୍କୃତ ପଢ଼ିପାରନ୍ତି ଏବଂ ଲେଖିପାରନ୍ତି । ଉକ୍ତ ଭାଷାରେ ମଧ୍ୟ ଅବାଧରେ କଥାବାର୍ତ୍ତା କରି ପାରନ୍ତି । ଷଷ୍ଠ ବର୍ଷରୁ ଚତୁର୍ଦ୍ଦଶ ବର୍ଷ ପର୍ଯ୍ୟନ୍ତ ଇଂରାଜୀ ଦ୍ୱିତୀୟ ଭାଷାରୂପେ ଶିକ୍ଷା ଦିଆଯାଏ । ନୀତିଶିକ୍ଷା ଏବଂ ଧର୍ମଶିକ୍ଷା ଦେବାରେ ଅଧିକ ସମୟ ବ୍ୟୟିତ ହୁଏ । ପ୍ରାଚ୍ୟ ପାଶ୍ଚାତ୍ୟ ଢଙ୍ଗରେ ଖେଳ ଖେଳିବାକୁ ଦିଆଯାଏ । ଖେଳରେ ଯୋଗଦେବା ବାଧ୍ୟତାମୂଳକ ଅଟେ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ସଂପର୍କ ଖୁବ୍ ଘନିଷ୍ଠ । ଛାତ୍ରମାନେ ସ୍ୱ ସ୍ୱ ପାରିବାରିକ ସ୍ନେହ ଓ ସୁଖରୁ ବଞ୍ଚିତ ହେଲେ ସୁଦ୍ଧା ଏଠାରେ ଏକ ବୃହତ୍ତ ପରିବାରରେ ଯୋଗଦାନ କରନ୍ତି । ସମସ୍ତେ ସମସ୍ତଙ୍କର ଦୁଃଖସୁଖରେ ଭାଗୀ ହୋଇ ବନ୍ଧୁ-ଭାବରେ ଚଳନ୍ତି । ଜାତିଗତ ପାର୍ଥକ୍ୟ ଭୁଲିଯାଇ ସମସ୍ତେ ସଦ୍‌ଭାବା-ପନ୍ନ ହୁଅନ୍ତି । ବୈଦିକ ଆଦର୍ଶ ଅନୁସାରେ ଚରିତ୍ରଗଠନ ଉପରେ ତୀବ୍ର ଦୃଷ୍ଟି ଦିଆଯାଏ । ଦେହ ଓ ମନର ଶୁଦ୍ଧତା, ଜୀବନର ସାରଲ୍ୟ, ଭକ୍ତି, ଧ୍ୟାନ, ପୂଜା ଏବଂ ପ୍ରୀତି ଏହି ବୈଦିକ ଆଦର୍ଶମାନଙ୍କ ମଧ୍ୟରେ ପ୍ରଧାନ । ଏହି କାର୍ଯ୍ୟ କରାଇବା ପାଇଁ ଅର୍ଥାତ୍ ଏହି ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ଶିକ୍ଷକଙ୍କ ଉପରେ ନିର୍ଭର କରାଯାଏ । ସେମାନେ ଚରିତ୍ରବାନ୍ ଓ ମେଧାବୀ । ସେମାନେ ମଧ୍ୟ ବଡ଼ ବଡ଼ ଲୋକ । ସେମାନେ ନିଃସ୍ୱାର୍ଥପର କର୍ମୀଭାବରେ କାର୍ଯ୍ୟ

କରନ୍ତି । ଅଧ୍ୟକ୍ଷ ତାଙ୍କର ସମସ୍ତ ସମ୍ପତ୍ତି ସ୍କୁଲକୁ ଦାନ କରି ତ୍ୟାଗର ଆଦର୍ଶ ଦେଖାଇଛନ୍ତି, ତେଣୁ ଛାତ୍ରମାନେ ଶିକ୍ଷକଙ୍କର ବ୍ୟକ୍ତିତ୍ୱଦ୍ୱାରା ପ୍ରଭାବିତ ହୁଅନ୍ତି ।

ପରିଶେଷରେ ବକ୍ତବ୍ୟ ଏହି ଯେ ପ୍ରକୃତ ଏହି ବିଦ୍ୟାଳୟର ଶିକ୍ଷା, କୃଷ୍ଟି ଏବଂ ନୈତିକ ଜୀବନ ଗଠନ କରିବାରେ ସାହାଯ୍ୟ କରୁଅଛି । ଉକ୍ତପୂତ ନିରଳସ ଓ ସରଳ ଜୀବନଯାପନ କରି ଛାତ୍ରମାନେ ଦେହ ଓ ମନକୁ ଶୁଦ୍ଧ ରଖନ୍ତି । ଚରିତ୍ର ଗଠନ ଓ ଆଧ୍ୟାତ୍ମିକ ଉନ୍ନତି ସଙ୍ଗେ ସଙ୍ଗେ ମାନସିକ ଉନ୍ନତି ସାଧିତ ହୁଏ । ଏହାହିଁ ବାସ୍ତବରେ ପ୍ରାଚୀନ ଭାରତୀୟ ଶିକ୍ଷାର ଲକ୍ଷ୍ୟ ।

ଆର୍ଯ୍ୟସମାଜର ଆନୁକୂଲ୍ୟରେ ଏହିପରି ଅନେକ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଦିଲ୍ଲୀରେ ହିନ୍ଦୁବାଳିକାମାନଙ୍କ ଶିକ୍ଷାପାଇଁ ଗୋଟିଏ "କନ୍ୟା ଗୁରୁକୁଳ" ସ୍ଥାପିତ ହୋଇଅଛି । ବ୍ରହ୍ମଚର୍ଯ୍ୟ ଏବଂ ଶୃଙ୍ଖଳାମାର୍ଗରେ ଶିକ୍ଷାଦେଇ ଭାରତୀୟ ନାରୀସମାଜକୁ ପୁନର୍ଗଠିତ କରାଇବା ଏହି ବିଦ୍ୟାଳୟର ଲକ୍ଷ୍ୟ । ଏଠାରେ ମହିଳା ଶିକ୍ଷକମାନେ ନିଯୁକ୍ତ ହୋଇଅଛନ୍ତି । ଯେଉଁ ବାଳିକାମାନେ ଏଠାରେ ପ୍ରବେଶ ଲାଭକରିବେ ସେମାନଙ୍କର ପିତାମାତାମାନେ ପ୍ରତିଶ୍ରୁତ ହେବେ ଯେ ସେମାନେ ସେମାନଙ୍କର ବାଳିକାମାନଙ୍କୁ ଷୋଳବର୍ଷ ପୂର୍ବରୁ କୌଣସି କାରଣବଶତଃ ବିବାହ ଦେବେ ନାହିଁ, ଅର୍ଥାତ୍ ବାଲ୍ୟ-ବିବାହର ମୂଲୋତ୍ପାଟନ କରାଇ ଭାରତର ପାରିବାରିକ ଜୀବନକୁ ଶାନ୍ତିମୟ ଏବଂ ସୁଖମୟ କରାଇବା ଏହି ବିଦ୍ୟାଳୟର ଆଦର୍ଶ ।

ଏ ପ୍ରକାର ୩୧ ଗୋଟି ଶିକ୍ଷାନୁଷ୍ଠାନ ଭାରତର ବିଭିନ୍ନସ୍ଥାନରେ ଆର୍ଯ୍ୟସମାଜ କର୍ତ୍ତୃକ ସ୍ଥାପିତ ହୋଇଅଛି । ତଦ୍ୱାରା ଭାରତର ଅଶେଷ କଲ୍ୟାଣ ସାଧିତ ହେଉଅଛି । ବାସ୍ତବରେ ଏହି ସମାଜର ପ୍ରତିଷ୍ଠାତା

ଦୟାନନ୍ଦ ସରସ୍ୱତୀ ଧନ୍ୟବାଦାର୍ହ । ଭାରତରୁ କୁସଂସ୍କାର ଦୂରକରିବା ଏବଂ ଭାରତର ପୁନରୁଦ୍ଧାର କରାଇବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । ସେ ପ୍ରକୃତରେ ଜଣେ ଭାରତୀୟ ଆଦର୍ଶବାଦୀ ସମାଜସଂସ୍କାରକ । ତାଙ୍କର ଲକ୍ଷ୍ୟ ସିଦ୍ଧ ହେଉ । ଭାରତର ପ୍ରାଚୀନ ଆଦର୍ଶ ଫେରି ଆସୁ । ତାର ଯୁବକଯୁବତୀଗଣ ବ୍ରହ୍ମଚର୍ଯ୍ୟ ରକ୍ଷା କରି ବଳଶାଳୀ ଏବଂ ସୁସ୍ଥ ହେଉନ୍ତୁ । ତାହାହେଲେ ଭାରତ ଅଚିରେ ସ୍ୱାବଲମ୍ବୀ ହୋଇ ପାରିବ ।

---

## ଯୁଦ୍ଧୋତ୍ତର ଭାରତରେ ଶିକ୍ଷା

ଯୁଦ୍ଧ ଉଦ୍ୟାବନ୍ତ ବିଭୀଷିକାରେ ପରିପୂର୍ଣ୍ଣ . ଏହା ଅତୀବ ଭୀତପ୍ରଦ ଓ ଆତଙ୍କ ସୃଷ୍ଟିକାରୀ । ଏହା ଅଚିରେ ଧ୍ୱଂସର ତାଣ୍ଡବଲୀଳା ଖେଳାଇଦିଏ । ଏହାର ବିଶ୍ୱଗ୍ରାସୀ ଶକ୍ତି ଅତୀବ ଦାରୁଣ ଏବଂ ନିର୍ମମ । ଦ୍ୱେଷ, ହିଂସା, ବିଶ୍ୱାସଘାତକତା ଓ ଈର୍ଷା ଏହାର ସହଚର । ଏହାର କରାଳ କବଳରେ ପଡ଼ି କେତେ ଯେ ଦେଶ, ସଭ୍ୟତା, ସମାଜ ଓ ସଂସ୍କୃତି ବିଲୀନ ହୋଇଅଛି ଇତିହାସ ତାହାର ମୂକସାକ୍ଷୀ । ଯଦୁବଂଶର ଅବସାନ ଏକ ଭୀଷଣ ଯୁଦ୍ଧଦ୍ୱାରା ସଂଘଟିତ ହୋଇଥିଲା । କୁରୁକ୍ଷେତ୍ରରେ ଉଦୀୟମାନ କୁରୁକୁଳର ଯବନିକା ପାତ ହୋଇଥିଲା ।

ଏହିପରି ଶତ ଶତ ଦୃଷ୍ଟାନ୍ତ ଥିଲେ ମଧ୍ୟ ଧ୍ୱଂସ ଯୁଦ୍ଧର ଏକମାତ୍ର କାର୍ଯ୍ୟ ନୁହେଁ । ପ୍ରବହମାନ ଜଳସ୍ରୋତ ପରି ନିର୍ମାଣ ଓ ସୃଷ୍ଟି ଏହାର କାର୍ଯ୍ୟ । ଏକ ସଭ୍ୟତାର ଯବନିକା ପକାଇ ଅନ୍ୟ ଏକ ସଭ୍ୟତାର ମୂଳଦୁଆ ସୃଷ୍ଟି କରେ । ସମାଜ, ସାହିତ୍ୟ,

ସଭ୍ୟତା, ସଂସ୍କୃତି ଇତ୍ୟାଦିକୁ ପ୍ରଭାବିତ କରେ । ହିନ୍ଦୁର ଧର୍ମଗ୍ରନ୍ଥ ଗୀତା କୁରୁକ୍ଷେତ୍ର ଯୁଦ୍ଧର ଶ୍ରେଷ୍ଠ ଅବଦାନ । ଭାରତୀୟ ସଭ୍ୟତା ଓ କୃଷ୍ଟିର ଶ୍ରେଷ୍ଠଗ୍ରନ୍ଥ ମହାଭାରତ ଓ ରାମାୟଣ ଯୁଦ୍ଧରୁ ଉତ୍ପନ୍ନ । ଯୁଦ୍ଧ ସକ୍ରିୟ ଚେଷ୍ଟାର ଉଦ୍‌ବୋଧକ । ଯୁଦ୍ଧୋତ୍ତର କାଳ ଇତିହାସରେ ଏକ ଅଭିନବ ପୃଷ୍ଠା ଉଦ୍‌ଘାଟନ କରେ । ଯୁଦ୍ଧ ସମୟର ଅନୁଭୂତି ମାନବସମାଜର ଜ୍ଞାନରାଶିକୁ ବଢ଼ାଇ ଦିଏ ।

ବିଗତ ମହାଯୁଦ୍ଧର ଶିକ୍ଷା ଆମ୍ଭମାନଙ୍କର ମନରୁ ଯାଇନାହିଁ । ଗତ ଛଅବର୍ଷର ଅନୁଭୂତିରୁ ଆମ୍ଭମାନଙ୍କୁ ଜାଣିବାକୁ ହେଲା ଯେ ଆଧୁନିକ ଯୁଦ୍ଧ ମାନବ ବୁଦ୍ଧିର ଶ୍ରେଷ୍ଠ ପରାକାଷ୍ଠା । ଆଧୁନିକ ସମର ଦୈହିକ ଶକ୍ତିପରୀକ୍ଷାର କ୍ଷେତ୍ର ନୁହେଁ । ଏହା ଏକ ଦେଶର ବୁଦ୍ଧି ସହିତ ଅନ୍ୟ ଦେଶର ବୁଦ୍ଧିର ଲଢ଼ାଇ ଅଟେ । ଆଜି କାଲି ସୈନ୍ୟ, ସୈନ୍ୟବଳ ଏବଂ ଯୁଦ୍ଧକ୍ଷେତ୍ର କେବଳ ନାମମାତ୍ର । କିନ୍ତୁ ବୈଜ୍ଞାନିକର ପରୀକ୍ଷାଗାର ପ୍ରକୃତ ରଣପ୍ରାଙ୍ଗଣ ଏବଂ ଜାତିର ଶ୍ରେଷ୍ଠ ମାନସିକ ଶକ୍ତି ପ୍ରକୃତ ଯୋଦ୍ଧା ଅଟେ । କଲମ ବର୍ତ୍ତମାନ ବଲ୍ଲମର ସ୍ଥାନ ଅଧିକାର କରିଅଛି ।

ତେଣୁ ଦେଶର ମାନସିକ ଶକ୍ତିକୁ ଉନ୍ନତ କରାଇବା ସର୍ବପ୍ରଥମ କର୍ତ୍ତବ୍ୟ ଅଟେ । ଭାରତବର୍ଷରେ ମାନସିକ ଶକ୍ତିର ଅପଚୟ ବିଶେଷଭାବରେ ଘଟିଥାଏ । ଅନେକ ଧୀଶକ୍ତିସମ୍ପନ୍ନ ବାଳକବାଳିକା ଶିକ୍ଷାର ସୁଯୋଗ ଅଭାବରୁ ଅରଣ୍ୟ କୁସୁମସଦୃଶ ମଉଳି ପଡ଼ନ୍ତି— ସେମାନଙ୍କ ଧୀଶକ୍ତିର ଯଥୋଚିତ ବିକାଶ କରା ହୋଇପାରେ ନାହିଁ । ଦାରିଦ୍ର୍ୟରୂପକ ପୁଷ୍ପକୀଟ ଦ୍ୱାରା ଦଷ୍ଟ ହୋଇ ସେମାନେ ନିଜର ପ୍ରତିଭାର ବିକାଶ କରିପାରନ୍ତି ନାହିଁ । କାରଣ ଭାରତରେ

ଶିକ୍ଷାପାଇବାର ସୁଯୋଗ ସମସ୍ତଙ୍କୁ ବ୍ୟକ୍ତିନିର୍ବିଶେଷରେ ମିଳେ ନାହିଁ । ପ୍ରାଥମିକ ଶିକ୍ଷାକୁ ଅବୈତନିକ ଏବଂ ବାଧ୍ୟତାମୂଳକ କରିପାରିଲେ ଏହି କାର୍ଯ୍ୟ ଅନେକ ପରିମାଣରେ ସମ୍ଭବପର ହୋଇ ପାରନ୍ତା । ଭାରତ ସରକାରଙ୍କ ଶିକ୍ଷା ପରାମର୍ଶଦାତା ମି: ସର୍ଜେଣ୍ଟ ଉଲ୍ଲିଖିତ ବିଷୟ ପ୍ରତି ଦୃଷ୍ଟି ଦେଇ ଗୋଟିଏ ଯୁଦ୍ଧୋତ୍ତର ଶିକ୍ଷା ପରିକଳ୍ପନା ଭାରତସରକାରଙ୍କ ଆଗରେ ଉପସ୍ଥାପିତ କରିଅଛନ୍ତି । ଯୁଦ୍ଧାନ୍ତେ ଭାରତବର୍ଷ କିପରି ଅନ୍ୟାନ୍ୟ ସଭ୍ୟଦେଶମାନଙ୍କ ସହିତ ଏକ ଆସନ ଲାଭ କରିପାରିବ—ସେଥିପାଇଁ ଏହାହିଁ ସର୍ବପ୍ରଥମ ସୁଚିନ୍ତିତ ପରି-କଳ୍ପନା । ଅବଶ୍ୟ ଶିକ୍ଷାକୁ ବାଧ୍ୟତାମୂଳକ ଓ ଅବୈତନିକ କରିବା ଯୋଜନା ଭାରତବର୍ଷରେ ସମ୍ପୂର୍ଣ୍ଣ ନୂତନ ନୁହେଁ । କାରଣ ୧୯୧୧ ଖ୍ରୀଷ୍ଟାବ୍ଦରେ ଭାରତର ବରେଣ୍ୟ ସନ୍ତାନ ମହାମତି ଗୋଖଲେ ଏଥି ପ୍ରତି ଦେଶର ଦୃଷ୍ଟି ଆକର୍ଷଣ କରିଥିଲେ । ଶିକ୍ଷାକୁ ବାଧ୍ୟତାମୂଳକ ଓ ଅବୈତନିକ କରିଇ ଦେଶରେ ଗଣଶିକ୍ଷାର ପ୍ରସାର କରିବାପାଇଁ ଓ ଭାରତର ଦ୍ୱାରେ ଦ୍ୱାରେ ଶିକ୍ଷାଲୋକ ଜାଳିବା ପାଇଁ ସେ କେନ୍ଦ୍ରଶାସନ ପରିଷଦରେ ପ୍ରସ୍ତାବ ଆଗତ କରିଥିଲେ଼ । କିନ୍ତୁ ଇତିମଧ୍ୟରେ ତାହା ସେତେଦୂର କାର୍ଯ୍ୟକାରୀ ହୋଇ ପାରିନାହିଁ ।

ଗଠନ କରିବା ମାନବ ଜୀବନର ଏକ ମସ୍ତବଡ଼ ପ୍ରବୃତ୍ତି । ସକଳ ଅବସ୍ଥାରେ ସମୟୋଚିତ କାର୍ଯ୍ୟ କରିବା ପାଇଁ ସେ ଉଦ୍‌ବିଗ୍ନ ହୁଏ । କିନ୍ତୁ ନା କିଛି ନିର୍ମାଣ କରିବା—ଏହି ଇଚ୍ଛା ତାହାର ବୁଦ୍ଧିବୃତ୍ତିକୁ ଆଗେଇ ନେଇଯାଏ । ସେ କେବେହେଁ ଅଳସୁଆ ହୁଏ ନାହିଁ । ତାହାର ମାନସିକ ଶକ୍ତିର ପରସର ଅନୁଯାୟୀ ପ୍ରତ୍ୟେକ ମନୁଷ୍ୟ ସର୍ବଦା ନିର୍ମାଣକ୍ଷମ । ଉଦାହରଣ ସ୍ୱରୂପ, ଯେତେବେଳେ

ଏହି ବିଶ୍ୱଗ୍ରାସୀ ସମରର ଅବସାନର ସୂଚନା ମିଳିଲା, ସେତେବେଳେ ପ୍ରତ୍ୟେକ ଚିନ୍ତାଶୀଳ ମାନବ ଜଗତର କଲ୍ୟାଣ ନିମିତ୍ତ ଯୁଦ୍ଧୋତ୍ତର ସମସ୍ୟା ପାଇଁ ନାନା ଯୋଜନା ପ୍ରସ୍ତୁତ କରିବାରେ ଲାଗିଲେ । ପ୍ରତ୍ୟେକ କ୍ଷେତ୍ରରେ ଯୁଦ୍ଧୋତ୍ତର ପୁନର୍ଗଠନର ଚିନ୍ତା ପଡ଼ିଲା । ମାନବସମାଜର ସମୂହକଲ୍ୟାଣ ପ୍ରତି ଲକ୍ଷ୍ୟ ରଖି ପ୍ରତ୍ୟେକ ବିଭାଗରୁ ନାନା ନୂତନ ଯୋଜନା ଅଗତ କରାହେଲା । ତଦନୁଯାୟୀ ମହାମାନ୍ୟ ବଡ଼ଲାଟଙ୍କ କର୍ତ୍ତୃକ ଯେଉଁ ପୁନର୍ଗଠନ ସମିତି ଆହୁତ ହୋଇଥିଲା ସେଥିରେ ମି: ସର୍ଜେଣ୍ଟ ଶିକ୍ଷାସଂକ୍ରାନ୍ତ ଏକ ଯୋଜନା ଅଗତ କରିଥିଲେ । ଶିକ୍ଷାଜଗତର ସମସ୍ତ ସ୍ତରପ୍ରତି ଦୃଷ୍ଟି ଦେଇ ଅର୍ଥାତ୍ ପ୍ରାଥମିକ ଅବସ୍ଥା-ଠାରୁ ଆରମ୍ଭ କରି ଶିକ୍ଷାର ସର୍ବୋଚ୍ଚ ଅବସ୍ଥା ପର୍ଯ୍ୟନ୍ତ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିଥିଲେ ।

ପ୍ରାଥମିକ ବିଭାଗ :—ଅଧୁନିକ ପ୍ରାଥମିକ ଶିକ୍ଷାପଦ୍ଧତିରେ ପ୍ରାଥମିକ ଶିକ୍ଷକର ଭତ୍ତା ଅତି ସ୍ୱଳ୍ପ ରଖାଯାଇଛି । ତେଣୁ ଯୋଗ୍ୟତା-ସମ୍ପନ୍ନ କର୍ମକୁଶଳ ଶିକ୍ଷକ ଏ ବିଭାଗକୁ ଆସୁନାହାନ୍ତି । ଫଳରେ ଶିକ୍ଷାକାର୍ଯ୍ୟ ଯେତେଦୂର ଉଚ୍ଚସ୍ତରର ହେବାର କଥା ତାହା ହୋଇ ପାରୁନାହିଁ । ଚିରାଚରିତ ପ୍ରଥାନୁସାରେ ଏ କାର୍ଯ୍ୟ ଚାଲିଅଛି । ଅଧିକନ୍ତୁ ଶିକ୍ଷା ବାଧ୍ୟତାମୂଳକ ହୋଇ ନ ଥିବାରୁ ଛାତ୍ରମାନେ ବିଦ୍ୟାଳୟକୁ ନ ଆସି ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟାପୃତ ରହୁଅଛନ୍ତି । ଲୋକମାନେ ଅଜ୍ଞତାବଶତଃ ଶିକ୍ଷାର ମୂଲ୍ୟ ନ ବୁଝି ନିଜର ବାଳକ-ମାନଙ୍କୁ ବିଦ୍ୟାଳୟକୁ ପଠାଇବାକୁ ଅନାବଶ୍ୟକ ବୋଲି ମନେ କରୁଛନ୍ତି । ଯେଉଁ କେତେ ଜଣ ଛାତ୍ର ବିଦ୍ୟାଳୟରେ ପଦାର୍ପଣ କରନ୍ତି ସେମାନଙ୍କ ମଧ୍ୟରୁ ଅନେକ ପ୍ରାଥମିକ ଶିକ୍ଷା ସାଙ୍ଗ ନ କରି ମଝିରେ ନିଜ ବାଟ ଧରନ୍ତି । ବର୍ଷେ ଅଧେ ବିଦ୍ୟାଳୟରେ ଉପସ୍ଥିତ

ହୋଇ ବିଦ୍ୟାଳୟର ଶିକ୍ଷାପ୍ରତି ବୀତସ୍ପୃହ ହୋଇପଡ଼ନ୍ତି । ତେଣୁ ଛାତ୍ରମାନଙ୍କର ଶିକ୍ଷାର ଅପଚୟ ବିଶେଷ ଭାବରେ ହୁଏ । ବିଦ୍ୟାଳୟରେ ଉପସ୍ଥାନ ସାଧାରଣତଃ ଅନିୟମିତ । ତେଣୁ କେତେକ ଛାତ୍ର ମଧ୍ୟ ଗୋଟିଏ ଗୋଟିଏ ଶ୍ରେଣୀରେ ଦୁଇ ତିନି ବର୍ଷ ଅବଦ୍ଧ ହୋଇ ରହନ୍ତି । ଯେଉଁ ଦେଶରେ ପ୍ରାଥମିକ ବିଦ୍ୟାଳୟମାନ କାଳପରି ଛିଦ୍ର ହୋଇ ରହିବାର କଥା ସେ ଦେଶରେ ଗୋଟିଏ ମାତ୍ର ସୁପରି-ଚାଳିତ ବିଦ୍ୟାଳୟ ଦେଖିବା ଦୁର୍ଲଭ । ଏହି ହେଲା ପ୍ରାଥମିକ ଶିକ୍ଷାର କରୁଣ ଛବି ।

ଏହାର ନିରାକରଣ ପାଇଁ ମି: ସର୍ଜେଣ୍ଟ ଛଅବର୍ଷରୁ ଚଉଦ ବର୍ଷର ବାଳକବାଳିକାଙ୍କ ପାଇଁ ଅବୈତନିକ ଓ ବାଧ୍ୟତାମୂଳକ ଶିକ୍ଷାର ବ୍ୟବସ୍ଥା କରିଅଛନ୍ତି । ଛଅ ବର୍ଷରୁ ଏଗାର ବର୍ଷ ବୟସ୍କ ବାଳକବାଳିକାମାନେ ନିମ୍ନ ମୌଳିକ ବା ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରିବେ । ଏଗାର ବର୍ଷରୁ ଚଉଦ ବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ ସେମାନେ ଉଚ୍ଚ ମୌଳିକ ବା ମଧ୍ୟ ବିଦ୍ୟାଳୟରେ ଅଧ୍ୟୟନ କରିବେ । ଏଗାର ବର୍ଷ ବୟସରେ ଏହି ବିଭାଗ କରିବାର ଉଦ୍ଦେଶ୍ୟ ଏହି ଯେ ଏ ସମୟ ଯୌବନର ପ୍ରାରମ୍ଭିକ ଅବସ୍ଥା । ତେଣୁ ଏଗାର ବର୍ଷ ପରେ ବାଳକବାଳିକାମାନଙ୍କର ଶାରୀରିକ ଓ ମାନସିକ ଅବସ୍ଥାର ପରିବର୍ତ୍ତନ ଦୃଷ୍ଟିରୁ ଭିନ୍ନପ୍ରକାରର ଶିକ୍ଷା ପାଇଁ ବ୍ୟବସ୍ଥା କରିବାକୁ ହେବ । ଅତୁରମଧ୍ୟ ନିମ୍ନମୌଳିକ ଅବସ୍ଥାର ପାଠ ଶେଷ କରି ଛାତ୍ରମାନେ ଉଚ୍ଚ ବିଦ୍ୟାଳୟ ( High school ) ରେ ଅଧ୍ୟୟନ କରିବାକୁ ଯାଇ ପାରନ୍ତି ।

ମି: ସର୍ଜେଣ୍ଟ ସ୍ଥିର କରିଅଛନ୍ତି ଯେ ନିମ୍ନମୌଳିକ ବିଦ୍ୟାଳୟ-ମାନଙ୍କରେ ପ୍ରତି ତିରିଶ ଜଣ ଛାତ୍ରପାଇଁ ଜଣେ ଶିକ୍ଷକ, ଏବଂ ଉଚ୍ଚ

ମୌଳିକ ବିଦ୍ୟାଳୟରେ ପ୍ରତି ୨୫ ଜଣ ପିଲାପାଇଁ ଜଣେ ଶିକ୍ଷକ—ଏହି ହିସାବରେ ଶିକ୍ଷକ ନିଯୁକ୍ତ କରାଯିବ । ତଦନୁଯାୟୀ ସେ ହିସାବ କରିଅଛନ୍ତି ଯେ ଭାରତର ୪ କୋଟି ୨୦ ଲକ୍ଷ ଛାତ୍ରଙ୍କ ପାଇଁ ଏକ କୋଟି ୮୦ ଲକ୍ଷ ଶିକ୍ଷକ ଆବଶ୍ୟକ । ସେ ବିଶ୍ୱାସ କରନ୍ତି ଯେ ଶିକ୍ଷାକୁ ସାଫଲ୍ୟମଣ୍ଡିତ କରିବା ପାଇଁ ଶିକ୍ଷକଙ୍କ ଉପରେ ନିର୍ଭର କରିବାକୁ ହେବ । ଶିକ୍ଷକଙ୍କର ବେତନ ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇବା ଉଚିତ । ଏହି ଯୋଜନାକୁ କାର୍ଯ୍ୟକାରୀ କରାଗଲେ ନିମ୍ନ ମୌଳିକ ବିଦ୍ୟାଳୟରେ ଶିକ୍ଷକଙ୍କର ଦରମା ଟ ୩୦୲ରୁ ଟ ୪୦୲ ପର୍ଯ୍ୟନ୍ତ ହେବ ଏବଂ ସେମାନେ ବିନାଭଡ଼ାରେ ରହିବା ପାଇଁ ଘର ପାଇବେ । ଉଚ୍ଚ ମୌଳିକ ବିଦ୍ୟାଳୟର ଶିକ୍ଷକଙ୍କର ଦରମା ଟ୪୦୲ରୁ ଟ ୮୦୲ ପର୍ଯ୍ୟନ୍ତ ହେବ । ନିମ୍ନଶ୍ରେଣୀମାନଙ୍କରେ ଅଧିକ ସଂଖ୍ୟକ ଶିକ୍ଷୟିତ୍ରୀ ନିଯୁକ୍ତ କରିବାପାଇଁ ବ୍ୟବସ୍ଥା କରାଯାଇଅଛି । ଶିକ୍ଷକମାନଙ୍କୁ ତାଲିମ କରିବାପାଇଁ ମଧ୍ୟ ଯୋଜନା କରା ଯାଇଅଛି ।

ଅଧିକନ୍ତୁ ମଧ୍ୟ ସେ ସ୍ଥିର କରିଅଛନ୍ତି ଯେ ମୌଳିକ ଶିକ୍ଷା ସର୍ବପ୍ରଥମେ ଗ୍ରାମମାନଙ୍କରେ ଆରମ୍ଭ ହେବ । ମାତୃଭାଷା ଶିକ୍ଷାର ବାହନ ହେବ । ଭାରତର ଭାଷାର ବିଭିନ୍ନତା ମଧ୍ୟରେ ଗୋଟିଏ ସାଧାରଣ ଭାଷା ଶିକ୍ଷା ଦେବା ଉଚିତ । ଏହି ସାଧାରଣ ଭାଷାଟି ହିନ୍ଦୁସ୍ଥାନୀ ହେବ—ଉର୍ଦ୍ଦୁ ଓ ହିନ୍ଦୀ ଏହି ଉଭୟ ଅକ୍ଷରରେ ଲେଖାଯିବ । ଶିକ୍ଷକମାନେ ଉଭୟ ଅକ୍ଷର ଜାଣିବେ । ଶିକ୍ଷାନୀତି ବିଷୟରେ ସର୍ଜେଣ୍ଟ ସାହେବ ଓ୍ୱାର୍ଦ୍ଧାଯୋଜନା ସହିତ ଏକମତ । "କାର୍ଯ୍ୟ ମଧ୍ୟ ଦେଇ ଶିକ୍ଷାଦାନ" ( Learning by doing )କୁ ମୂଳ ନୀତି ରୂପେ ଗ୍ରହଣ କରାଯାଇଛି ।

ସବୁ କଥାରେ "ଆଗେ ମଉସା, ଉଡ଼ ପଇସା ।" ପଇସା ନ ହେଲେ ଓ ଅର୍ଥ ବ୍ୟୟ ନ କଲେ କୌଣସି ଦେଶହିତକର କାର୍ଯ୍ୟ

ଅନୁଷ୍ଠିତ ହୋଇପାରିବ ନାହିଁ । ତେଣୁ ପ୍ରକୃତରେ ଭାରତର ଉପକାର କରିବା ପାଇଁ ଅକୁଣ୍ଠିତ ଚିତ୍ତରେ ଅର୍ଥବ୍ୟୟ କରିବା ଉଚିତ । ମି: ସର୍ଜେଣ୍ଟ ସ୍ଥିର କରିଅଛନ୍ତି ଯେ ପ୍ରାଥମିକ ଶିକ୍ଷା ନିମିତ୍ତ ବାର୍ଷିକ ୨୦୦ କୋଟି ଟଙ୍କା ବ୍ୟୟିତ ହେବ ।

ମି: ସର୍ଜେଣ୍ଟଙ୍କର ନିର୍ଦ୍ଦେଶ ଅନୁସାରେ ଭାରତରେ ଛଅବର୍ଷ ବୟସ୍କ ପିଲାଙ୍କ ପାଇଁ ବାଧ୍ୟତାମୂଳକ ଓ ଅବୈତନିକ ଶିକ୍ଷାର ବ୍ୟବସ୍ଥା କରାଯିବ । ଛଅ ବର୍ଷର ପୂର୍ବ ସମୟ ଶିକ୍ଷା ଦୃଷ୍ଟିରୁ ନିତାନ୍ତ ଗୁରୁତର; ତେଣୁ ତିନିବର୍ଷରୁ ଛଅବର୍ଷର ପିଲାଙ୍କ ପାଇ ଶିଶୁଶିକ୍ଷା (nursery school) ଦେବାର ବ୍ୟବସ୍ଥା ମଧ୍ୟ କରା ହୋଇଅଛି । ଏହି ଶିକ୍ଷା ଅବୈତନିକ କିନ୍ତୁ ଇଚ୍ଛାଧୀନ ହୋଇ ରହିବ । ଏଠାରେ ଉପଯୁକ୍ତ ଶିକ୍ଷୟିତ୍ରୀ ନିଯୁକ୍ତ କରା ହେବେ । ଶିଶୁମାନଙ୍କର ସ୍ୱାସ୍ଥ୍ୟ ଓ ଅଭ୍ୟାସ ଗଠନ ପ୍ରତି ବିଶେଷ ନଜର ଦିଆଯିବ । ତେଣୁ ଯେଉଁ ସହରମାନଙ୍କରେ ନାନା ଶିଳ୍ପାନୁଷ୍ଠାନ ହେତୁରୁ ଜନବହୁଳତା ବିଶେଷ ପରିମାଣରେ ପରିଲକ୍ଷିତ ହୁଏ ସେଠାରେ ସର୍ବଦା ଏହି ବିଦ୍ୟାଳୟମାନ ସ୍ଥାପିତ ହେବ ।

ଉଚ୍ଚଇଂରାଜୀ ବିଦ୍ୟାଳୟ:—ଆମଦେଶରେ ଉଚ୍ଚଶିକ୍ଷା ଏକ ବିଳାସ କହିଲେ ଚଳେ । ଯାହାର ପ୍ରଚୁର ଧନ ଅଛି ତାହାର ଜ୍ଞାନ ଓ ମନର ଅଭାବ ଥିଲେ ସୁଦ୍ଧା ତା ପାଇଁ ଉଚ୍ଚ ଶିକ୍ଷାର ଦ୍ୱାର ସର୍ବଦା ଉନ୍ମୁକ୍ତ । ପକ୍ଷାନ୍ତରରେ ସାମର୍ଥ୍ୟ ଓ ଐକାନ୍ତିକ ଆଗ୍ରହ ଥାଇ ସୁଦ୍ଧା ଅନେକ ଛାତ୍ର ଦାରିଦ୍ର୍ୟ ହେତୁରୁ ଉଚ୍ଚଶିକ୍ଷାଲାଭରୁ ବଞ୍ଚିତ ହେଉଅଛନ୍ତି । ଦ୍ୱିତୀୟରେ ଅଧୁନିକ ଉଚ୍ଚ ଶିକ୍ଷା କେବଳ ବେକାର ସଂଖ୍ୟା ବୃଦ୍ଧି କରିବାରେ ଲାଗିଅଛି । ଏହା କେବଳ ମାତ୍ର ବିଶ୍ୱବିଦ୍ୟାଳୟ

ଶିକ୍ଷାର ଏକ ସୋପାନ ହୋଇ ରହୁଅଛି । ଆଧୁନିକ ଶିକ୍ଷାପଦ୍ଧତିର ଏହି ସବୁ ଦୋଷ ଲକ୍ଷ୍ୟ କରି ମି: ସର୍ଜେଣ୍ଟ ତାଙ୍କ ଯୋଜନାରେ ପ୍ରଥମତଃ ଧୀଶକ୍ତିସମ୍ପନ୍ନ ବାଳକମାନଙ୍କ ପାଇଁ ଉଚ୍ଚ ଶିକ୍ଷା ଅଭିପ୍ରେତ—ଏହି ବିଷୟ ପ୍ରତି ଦୃଷ୍ଟି ରଖି ଉଚ୍ଚଶିକ୍ଷାର ବ୍ୟବସ୍ଥା କରିଅଛନ୍ତି । ଯେଉଁମାନେ ଉଚ୍ଚ ଶିକ୍ଷା ପାଇବା ପାଇଁ ଉପଯୁକ୍ତ ସେମାନେ ଦରିଦ୍ର ହେଲେ ସୁଦ୍ଧା ଶିକ୍ଷା ଗ୍ରହଣ କରିବାକୁ ଯଥେଷ୍ଟ ସୁବିଧା ପାଇବେ । ଉଚ୍ଚଇଂରାଜୀ ବିଦ୍ୟାଳୟ ଦୁଇ ଭାଗରେ ବିଭକ୍ତ—(୧) କଳାଗତ ( Academic ) ଓ (୨) ବ୍ୟବସାୟ ଗତ ( Technical ) । ଉଚ୍ଚଶିକ୍ଷା ଏଗାର ବର୍ଷରୁ ସତର ବର୍ଷ ବୟସ୍କ ଛାତ୍ରମାନେ ଲାଭ କରି ପାରିବେ । ନିମ୍ନ ମୌଳିକ ଶିକ୍ଷା ସାଙ୍ଗ କରି ସାରି ଗୋଟିଏ ନିର୍ବାଚନ ପରୀକ୍ଷା ଦ୍ୱାରା ଛାତ୍ରମାନେ ଏହି ଉଭୟ ପ୍ରକାର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରବେଶ ଲାଭ କରିବା ପାଇଁ ନିର୍ବାଚିତ ହେବେ ।

ମି: ସର୍ଜେଣ୍ଟ ହିସାବ କରିଅଛନ୍ତି ଯେ ଏହି ପରିକଳ୍ପିତ ଉଚ୍ଚ ବିଦ୍ୟାଳୟମାନଙ୍କ ପାଇଁ ୩½ ଲକ୍ଷ ଶିକ୍ଷକ ଆବଶ୍ୟକ । ସେମାନଙ୍କ ମଧ୍ୟରୁ ଗ୍ରାଜୁଏଟମାନଙ୍କ ବେତନ ମାସିକ ଟ ୭୦୲ରୁ ଟ ୧୫୦୲ ହେବ ଓ ଅନ୍ୟମାନେ ମାସିକ ଟ ୪୦୲ ରୁ ଟ ୮୦୲ ପର୍ଯ୍ୟନ୍ତ ବେତନ ପାଇବେ । ଉଚ୍ଚ ଶିକ୍ଷା ପାଇଁ ଅତିକମ୍‌ରେ ୫୦ କୋଟି ଟଙ୍କା ବାର୍ଷିକ ଖର୍ଚ୍ଚ ଲାଗିବ ।

ବିଶ୍ୱବିଦ୍ୟାଳୟର ଶିକ୍ଷା:—ମେଧାବୀ ଛାତ୍ର ବିଶ୍ୱବିଦ୍ୟାଳୟରେ ଯୋଗ ଦେଇ ପାରିବେ । କେବଳ ସ୍ୱୀକାରୀ ଉଦ୍ଦେଶ୍ୟରେ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରିବା ଆଉ ଲକ୍ଷ୍ୟ ହୋଇ ରହିବ

ନାହିଁ । ଯେଉଁ ମତମାନ୍ ଛାତ୍ରଗଣ ଏହି ଶିକ୍ଷା ଲାଭ କରି ଦେଶର ଭବିଷ୍ୟତ ଉଜ୍ଜ୍ୱଳ କରିପାରିବେ ସେମାନଙ୍କ ପାଇଁ ଏହା ଅଭିପ୍ରେତ । ମି: ସର୍ଜେଣ୍ଟ ଦୁଃଖ କରନ୍ତି ଯେ ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟର ସମ-ପର୍ଯ୍ୟାୟକୁ ଆସି ନାହିଁ, କାରଣ କୌଣସି ପାଶ୍ଚାତ୍ୟ ଦେଶର ଛାତ୍ରଏହି ଭାରତୀୟ ବିଶ୍ୱବିଦ୍ୟାଳୟକୁ ଆକୃଷ୍ଟ ହୋଇ ଆସନ୍ତି ନାହିଁ । ସେଥିପାଇଁ ବିଶ୍ୱବିଦ୍ୟାଳୟ ଶିକ୍ଷାର ସଂସ୍କାର ଦରକାର ହେବ । ଖୁବ୍ ଯୋଗ୍ୟ ଛାତ୍ରମାନଙ୍କୁ ବିଶ୍ୱବିଦ୍ୟାଳୟରେ ପ୍ରବେଶ ଅଧିକାର ଦିଆଯିବ । ଶିକ୍ଷକମାନଙ୍କର ବେତନ ବଢ଼ାଇ ସେମାନଙ୍କୁ ସ୍ଥାୟୀଭାବରେ ନିଯୁକ୍ତ କରିବାକୁ ହେବ । ଏହି ଶିକ୍ଷାରେ ପ୍ରାୟ ଦଶଲକ୍ଷ ଟଙ୍କା ଖର୍ଚ୍ଚ ଲାଗିବ । ବିଶ୍ୱବିଦ୍ୟାଳୟ ଶିକ୍ଷା ୩ ବର୍ଷ ବ୍ୟାପୀ ହେବ । ବର୍ତ୍ତମାନ ଯେଉଁ ଆଇ. ଏ. ଶ୍ରେଣୀମାନ (Intermediate classes) ଅଛି ତାହା ଉଠାଇ ଦେଇ ଗୋଟିଏ ଶ୍ରେଣୀ ଉଚ୍ଚଇଂରାଜୀ ବିଦ୍ୟାଳୟକୁ ଉଠିଯିବ ଓ ଅନ୍ୟ ଶ୍ରେଣୀଟି ବିଶ୍ୱବିଦ୍ୟାଳୟରେ ସଂଯୁକ୍ତ ହୋଇ ରହିବ ।

ମୋଟଉପରେ ମି: ସର୍ଜେଣ୍ଟଙ୍କର ପରିକଳ୍ପନା ଏକ ସମ୍ପୂର୍ଣ୍ଣ ଯୋଜନା ବୋଲି କୁହା ଯାଇପାରେ । ଏହା ଭାରତର ପରିକଳ୍ପିତ ଜାତୀୟ ଯୋଜନା, କାରଣ ଏହାଦ୍ୱାରା ଶିକ୍ଷାପାଇବା ପାଇଁ ସମସ୍ତଙ୍କୁ ସମାନ ସୁବିଧା ଦିଆଯିବ । ସେ ଏକ ସମ୍ପୂର୍ଣ୍ଣ ଶିକ୍ଷାପଦ୍ଧତିର ସମସ୍ତ ବିଭାଗ ତନ୍ନ ତନ୍ନ କରି ଆଲୋଚନା କରି ପ୍ରସ୍ତାବମାନ ଦେଇ ଅଛନ୍ତି । ଦେଶର ଶିକ୍ଷାପଦ୍ଧତିରେ ଆଶୁ ପରିବର୍ତ୍ତନ ଆବଶ୍ୟକ । ତେଣୁ ଏ ଯୋଜନାକୁ ସମସ୍ତେ ସ୍ୱାଗତ କରିବେ ଏଥିରେ ସନ୍ଦେହ ନାହିଁ ।

ପ୍ରତ୍ୟେକ ପ୍ରଦେଶରେ ଏହି ଯୋଜନାନୁଯାୟୀ ଶିକ୍ଷାନୀତି ସ୍ଥିର କରିବା ପାଇଁ ବର୍ତ୍ତମାନ ବିଚାର ଚାଲିଛି । ଦେଶର ଶିକ୍ଷାତତ୍ତ୍ୱବିତ୍‌ଗଣ ଏ ବିଷୟ ଚିନ୍ତା କରୁଛନ୍ତି । ଉପଯୁକ୍ତ ଶିକ୍ଷକମାନଙ୍କୁ ତାଲିମ ଦେଇ ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସମସ୍ତେ ଚେଷ୍ଟିତ । ଶିକ୍ଷା ଏକ ସାମାଜିକ ସଂସ୍କାର । ଲୋକମାନେ ଶିକ୍ଷିତ ହେଲେ ଦେଶରେ ଏକ ନୂତନ ଯୁଗର ସଞ୍ଚାର ହେବ । ସୁଖର କଥା ଏହି ଯେ ଦେଶର ଶିକ୍ଷା ବର୍ତ୍ତମାନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଛି । ତେଣୁ ଦେଶର ଭବିଷ୍ୟତ ଅଚିରେ ଉଜ୍ଜ୍ୱଳ ହେବ, ଏହା ସୁନିଶ୍ଚିତ ।

---

ସ ମା ପ୍ତ ।

Printed by U. C. Mohanty, Cuttack Publishing Press, Cuttack—1946.